# ମଣିଷ ଜାତିର ଜନ୍ମ କାହାଣୀ





ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର

# ମହିଷ ଜାତିର ଜନ୍ମକାହାଣୀ

ଲେଖକ

**ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର, ଏମ୍. ଏ, ଡ଼. ଇଡ଼.**

ପ୍ରଥମ ମୁଦ୍ରଣ

୧୯୫୮

ପ୍ରକାଶକ

**କଟକ ଟ୍ରେଡ଼ିଂ କମ୍ପାନୀ**

ବାଲୁବଜାର, କଟକ—୨

ମୂଲ୍ୟ ପଞ୍ଚସ୍ତରୀ ନୂଆ ପଇସା

# ବିଷୟ-ସୂଚୀ

# ନିଜକଥା

ନୂଆ ଦୁନିଆ ସହିତ ତାଳ ପକେଇ ଚାଲିବା ପାଇଁ ଲୋକଙ୍କ ଭିତରେ ବୈଜ୍ଞାନିକ ଚିନ୍ତାଧାରାର ପ୍ରସାର ନିତାନ୍ତ ଆବଶ୍ୟକ। ବିଜ୍ଞାନର ବାର୍ତ୍ତା ଶିକ୍ଷିତ ଲୋକଙ୍କ ପାଖରେ ତ ପହଞ୍ଚୁଛି। କିନ୍ତୁ ସେତିକି ଯଥେଷ୍ଟ ନୁହେଁ। ଶିକ୍ଷିତ ଲୋକେ ତାକୁ ସରଳ ଭାବରେ ଲୋକଙ୍କ ପାଖରେ ପହଞ୍ଚେଇ ନ ଦେଲେ ସେ କାମ ଆଉ କରିବ କିଏ ?

ଆଜି ସବୁ କ୍ଷେତ୍ରରେ ଆମେ ପରିସ୍ଥିତିକୁ "ବିବର୍ତ୍ତନ" ଜରିଆରେ ଦେଖୁଛୁ। ଅର୍ଥନୀତି, ସାହିତ୍ୟ, ରାଜନୀତି ସବୁଥିରେ ବୈବର୍ତ୍ତିକ ଦୃଷ୍ଟିଭଙ୍ଗୀ ଆଜି ଅପରିହାର୍ଯ୍ୟ ହୋଇ ଉଠିଛି ଅଥଚ ଆମ ଲୋକେ ଏ ବିଷୟରେ କିଛି ଜାଣନ୍ତି ନାହିଁ।

ଡକ୍ଟର ମହତାବଙ୍କ 'ଗାଁ ମଜଲିସ୍'ରୁ ପ୍ରେରଣା ପାଇ ଓ ଡାରୁଇନ୍, ହାଲଡେନ୍, ଗ୍ରେଭ ଓ ହକ୍ସଲେଙ୍କ ଠାରୁ ଖୋରାକ ନେଇ ମୁଁ ଟିକେ ଟିକେ ବିବର୍ତ୍ତନବାଦର ମୂଳକଥାଗୁଡ଼ିକୁ ଲୋକଙ୍କ ଜୀବନ ସହିତ ସଂଶ୍ଲିଷ୍ଟ ବିଷୟବସ୍ତୁ ସାହାଯ୍ୟରେ ଅତି ସରଳ ଭାବରେ ବୁଝାଇ ଦେବାକୁ ଚେଷ୍ଟା କରିଛି। ଅବୈଜ୍ଞାନିକ ବିଜ୍ଞାନଚର୍ଚ୍ଚା ବଡ଼ ବିପଦଜନକ—ଏକଥା ମଧ୍ୟ ମୁଁ ଭୁଲିଯାଇ ନାହିଁ।

ଏଇ ପରିସ୍ଥିତିରେ ଯାହା ହୋଇଛି ତାହାହିଁ ଏଇ "ମଣିଷ ଜାତିର ଜନ୍ମ କାହାଣୀ" ବହିଟି।

ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର
ରାଜଗାଙ୍ଗପୁର
ତା ୫।୨।୫୮

# ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ୍‌ଙ୍କ ଅଭିମତ

ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର, ଏମ୍. ଏ., ଡି.ଇଡ଼. ଙ୍କ ଲିଖିତ "ମଣିଷର ଜନ୍ମକାହାଣୀ" ଦେଖିବାର ସୁଯୋଗ ପାଇଥିଲେ । ଶ୍ରୀମାନ୍ ଚନ୍ଦ୍ରଶେଖର ସାହିତ୍ୟିକ ତଥା ସାଂସ୍କୃତିକ ଆଲୋଚନାରେ ଆଗ୍ରହୀ ଥିବାର ଜାଣି ମୁଁ ସୁଖୀ ହେଲି । ତାଙ୍କର ଏ କାର୍ଯ୍ୟରେ ଉତ୍ତରୋତ୍ତର ଉନ୍ନତି ମୁଁ କାମନା କରେ । ମଣିଷର ଜନ୍ମ କାହାଣୀ ଛାତ୍ରମାନଙ୍କ ପକ୍ଷରେ ଶିକ୍ଷଣୀୟ ପୁସ୍ତକ ହେବାର ମୁଁ ମନେ କରେଁ । ପୁସ୍ତକଟି ସୁଲିଖିତ । ଭାଷା ସରଳ । ତେଣୁ ସାଧାରଣ ଲୋକେ ମଧ୍ୟ ମଣିଷର ଇତିହାସ ସମ୍ବନ୍ଧରେ ବିଜ୍ଞାନସମ୍ମତ ଭାବରେ ଜ୍ଞାନ ଅର୍ଜନ କରି ପାରିବେ ।

ଶ୍ରୀ ହରେକୃଷ୍ଣ ମହତାବ୍
୭।୨।୫୮

# ନାନା ମୁନିଙ୍କର ନାନା ମତ

ଦୁନିଆରେ ମଣିଷଠାରୁ ବଳି ଆଉ କିଛି ବଡ଼ ଜିନିଷ ନାହିଁ । ଏଇ ମଣିଷ ସାରା ଜଗତକୁ ନିଜ ଅଧୀନରେ ରଖିଛି । ଆକାଶରେ ଉଡ଼ୁଛି । ପାଣିରେ ବୁଡ଼ୁଛି । ଏତେ ବଡ଼ ଓ ଭୟଙ୍କର ସମୁଦ୍ର ଉପରେ ଶହ ଶହ ମାଇଲ, କାହିଁ କେଉଁ ଦୂର ଦେଶକୁ ବୋଇତ ବାହି ନେଉଛି । ନଈର ସୁଅକୁ ଅଟକାଇ ସେଥିରୁ ବିଜୁଳି ତିଆରି କରି ତାକୁ କାମରେ ଲଗାଉଛି । ରେଲଗାଡ଼ି ତିଆରି କରିଛି ସେଇ । ଘଣ୍ଟାକେ ଶହ ଶହ ମାଇଲ ବେଗରେ ଉଡ଼ାଜାହାଜରେ ଉଡ଼ୁଛି ସେଇ । ମାଟି ଭିତରେ ଥିବା ଲୁହା, କୋଇଲା, ସୁନାକୁ କାଢ଼ି ସେଥିରେ ନାନା ଜିନିଷ ସେ ଗଢ଼ୁଛି । ଶହ ଶହ ମାଇଲ ଲମ୍ବ ବାଲିଆ ମରୁଭୂମିରେ ଫସଲ ଫଳାଉଛି ସେଇ । ଆଉ ସବୁଠୁ ମଜାର କଥା ହେଉଛି ମଣିଷ ଏବେ ଆକାଶରେ ଥିବା ଶହ ଶହ ମାଇଲର ଗ୍ରହମାନଙ୍କୁ ଦେଖି ଯିବାକୁ ମଧ୍ୟ ପ୍ରସ୍ତୁତ ହୋଇ ରହିଲାଣି ।

କେବଳ ସେତିକି ନୁହେଁ—ମଣିଷ ନିଜର ରୋଗ ବଇରାଗ ପାଇଁ ମଧ୍ୟ ନିତି ହଜାର କିସମର ଔଷଧ ତିଆରି କରୁଛି । ଦେହ ଭିତରେ କଣ କଣ ଅଛି ତା ଜାଣୁଛି । ଛୁଞ୍ଚିମୁନରେ ହଜାର ସଂଖ୍ୟାରେ ଧରୁଥିବା ଅତି ଛୋଟ ଜୀବାଣୁଙ୍କୁ ସେ ଦେଖିପାରୁଛି । ଦେହର କୌଣସି ଜଅନ୍ତା ଅଙ୍ଗ ବିଗିଡ଼ିଗଲେ ଅନ୍ୟ ଜୀବଜନ୍ତୁଙ୍କ-ଠାରୁ ତାହା ଆଣି ସେ ଲଗାଇ ଦେଉଛି । ଆମ ଭିତରୁ କାହାର ଆଖିରେ ପିତୁଳା ନଷ୍ଟ ହୋଇ ଆଖିକୁ ଦିଶୁ ନ ଥିଲେ ସଙ୍ଗେ ସଙ୍ଗେ

ମରିଥିବା ଲୋକର ଆଖିରୁ ପିତୁଳାକୁ କାଢ଼ିଆଣି ଲଗେଇ ଦିଆଯାଉଛି ।

ମୋଟ ଉପରେ ମଣିଷ ପକ୍ଷରେ ଅସମ୍ଭବ ହୋଇ ଆଉ କିଛି ନାହିଁ । ନଇର ମାୟା ଏବେ ନାରାୟଣଙ୍କୁ ମଧ୍ୟ ଅଗୋଚର ହେଲଣି ।

ମଣିଷ ଏସବୁ କରୁଛି କିମିତି ? ଟିକିଏ ଭାବିଲେ ଜଣାଯିବ ଯେ ମଣିଷ ବୁଦ୍ଧି ଖର୍ଚ୍ଚ କରି ପ୍ରକୃତିର ନିୟମମାନଙ୍କୁ ଜାଣି ତାକୁ ଇ କାର୍ଯ୍ୟରେ ଲଗାଉଛି ।

କିନ୍ତୁ ଏ ମଣିଷ ଜାତି ପୃଥିବୀକୁ କିପରି, କେଉଁଠୁ ଆସିଲା ? ଅନନ୍ତକାଳରୁ ମଣିଷ ଏହିପରି ପୃଥିବୀରେ ବାସ କରୁଥିଲା । କିମ୍ବା ହଠାତ୍ ଭଗବାନ ମଣିଷକୁ ତିଆରି କରି ପୃଥିବୀରେ ଆଣି ଥୁଇଦେଲେ ? ଅଥବା ଏଇ ପୃଥିବୀର ମାଟିରୁ ସେ ଧୀରେ ଧୀରେ ରୂପ ପାଇ ଶେଷରେ ମଣିଷ ହେଇଛି ?

ଅନେକ ଦିନରୁ ଏଇ ପ୍ରଶ୍ନ ବଡ଼ ବଡ଼ ପଣ୍ଡିତଙ୍କୁ ଅଡ଼ୁଆରେ ପକେଇଛି । ସେମାନେ ନାନା ଭାବରେ ଉତ୍ତର ଦେବାକୁ ଚେଷ୍ଟା କରିଚନ୍ତି ।

ଖ୍ରୀଷ୍ଟିଆନମାନଙ୍କ ମତରେ ଭଗବାନ ପ୍ରଥମେ ଏଇ ମାଟିକି ନେଇ ନିଜପରି ମୂର୍ତ୍ତିଟିଏ ଗଢ଼ିଲେ । ତା ପରେ ତା ଭିତରେ ପ୍ରାଣବାୟୁ ଫୁଙ୍କିଦେଲେ—ବେଶ ମଣିଷ ତିଆରି ହୋଇଗଲା । ତା’ ପରେ ତା ନାଁ ଦିଆଗଲା—ଆଦମ୍ । ଆଦମ୍ ଶବ୍ଦର ଅର୍ଥ ଓଦାମାଟି । ମାଟିରୁ ତିଆରି ହୋଇ ଥିବାରୁ ତା ନାଁ ହେଲା ଆଦମ୍ । ତା’ପରେ ବି ଗୋଟିଏ ସ୍ତ୍ରୀ ତିଆରି ହେଲା । ଏଇମାନଙ୍କଠୁ ସାରା ମଣିଷଜାତି ହେଲା ।

ମୁସଲମାନମାନଙ୍କ ମତରେ ଆଲ୍ଲା ପ୍ରଥମେ ମଣିଷକୁ ବିଭିନ୍ନ ରଙ୍ଗର ଓଦାମାଟିରେ ତିଆରି କରିଥିଲେ । ତେଣୁ ଆମେ ପୃଥିବୀରେ ଗୋରା କଳା ଇତ୍ୟାଦି ନାନା ରଙ୍ଗର ମଣିଷ ଦେଖୁ ।

ନିଉଜିଲଣ୍ଡ ନାମକ ଦେଶର ମାଓରି ଜାତିର ବିଶ୍ୱାସ— ପ୍ରଥମେ ଦେବତା ନାଲିମାଟି ନେଇ ତାକୁ ରକ୍ତରେ ବୁଡ଼ାଇ ମଣିଷଟିଏ ଗଢ଼ି ତା କାନରେ ଫୁଙ୍କିବାକୁ ଲାଗିଲେ । ଏହିପରି ଫୁଙ୍କୁ ଫୁଙ୍କୁ ଶେଷକୁ ସେ ଜୀବନ ପାଇ ଯାଇ ଛିଙ୍କିଦେଲା ।

ମିଶର ଦେଶରେ ଏକ ଚିତ୍ର ଦେଖିବାକୁ ମିଳେ । ବହୁଯୁଗର ଚିତ୍ର ସେ । ସେ ଚିତ୍ରରେ ଜଣେ ଶିଙ୍ଗଥିବା ଦେବତା ମଣିଷକୁ ମାଟିରୁ ଗଢ଼ୁଥିବାର ଦେଖାଯାଏ ।



(ମିଶରର ଦେବତା ମାଟିରୁ ମଣିଷ ଗଢ଼ୁଛନ୍ତି)

ହିନ୍ଦୁଙ୍କ ମତରେ ଚତୁର-ମୁଣ୍ଡିଆ ବ୍ରହ୍ମା ସବୁ ସୃଷ୍ଟି କଲେ । କାରଣ ସେ ହେଉଛନ୍ତି ସୃଷ୍ଟିର ଦେବତା ।

ଏଇପରି ନାନା ଧର୍ମ ମଣିଷର ଜନ୍ମ ସମ୍ବନ୍ଧରେ ନାନା କଥା କହନ୍ତି । ମଣିଷଜାତି ସେତେବେଳେ ମାଟିରେ ନାନା ପ୍ରକାର ଜିନିଷ ଗଢ଼ି ଶିଖିଥିଲା— ତେଣୁ ବିଶ୍ୱାସ କରୁଥିଲା ଯେ ଭଗବାନ ବି ସେଇପରି ମାଟିରୁ ମଣିଷକୁ ଗଢ଼ି ଦେଇଥିବେ ।

କିନ୍ତୁ ତା ପରେ ବଡ଼ ବଡ଼ ପଣ୍ଡିତମାନେ ବାହାରିଲେ । ସେମାନେ ନାନା ଉପାୟରେ ସତକଥା ଜାଣିବାକୁ ଚେଷ୍ଟାକଲେ । ଲୋକେ ପ୍ରଥମେ ଭାବୁଥିଲେ ପୃଥିବୀଟା ଚଟକା ଓ ସ୍ଥିର । ପରେ ଦେଖାଗଲା ଯେ ପୃଥିବୀ, ଚନ୍ଦ୍ର, ସୂର୍ଯ୍ୟ ଓ ଅନ୍ୟାନ୍ୟ ଗ୍ରହ ନକ୍ଷତ୍ର ଭଳି ଗୋଲ । ପୁଣି ତାହା ନିଜ ଚାରିପଟେ ନଟୁ ଭଳି ଘୂରୁ ଘୂରୁ ବର୍ଷକେ ଥରେ ସୂର୍ଯ୍ୟ ଚାରିପାଖେ ଘୂରୁଛି । ଦୂରବୀକ୍ଷଣ ଯନ୍ତ୍ରରେ ଦେଖି ପଣ୍ଡିତମାନେ ଜାଣିଲେ ଯେ ସଂସାରରେ ଲକ୍ଷ, ଲକ୍ଷ, କୋଟି, କୋଟି ଗ୍ରହ,ନକ୍ଷତ୍ର ଅଛନ୍ତି । ସେମାନେ ବି ଚାରିଆଡ଼େ ନିୟମ ମୁତାବକ ଘୂରୁଛନ୍ତି । ସେମାନେ ମଧ୍ୟ ଆମ ପୃଥିବୀଠାରୁ ଅନେକ ଗୁଣରେ ବଡ଼ । ଆଖିରେ ଦେଖିବା ପରେ ଲୋକମାନଙ୍କ ମନରେ ମନଗଢ଼ା କଥା ପ୍ରତି ଧୀରେ ଧୀରେ ଅବିଶ୍ୱାସ ଆସିଲା । ବିଜ୍ଞାନର ଉନ୍ନତି ହେଲା ।

ଦୁଇଶବର୍ଷ ତଳେ ଜଣେ ରୁଷ ପଣ୍ଡିତ 'ଲମନୋସଭ୍' ପ୍ରମାଣ କଲେ ଯେ ପୃଥିବୀରେ ଆଜ ଯାହା ଦେଖାଯାଉଛି, ହଜାର ହଜାର ବର୍ଷ ତଳେ ସେ ସବୁ ଠିକ୍ ସେପରି ନ ଥିଲା । ସୁଇଡ଼େନର ଜଣେ ପଣ୍ଡିତ 'ଲିନ୍ନେଉସ୍' ମଣିଷର ଗଠନ ମାଙ୍କଡ଼ମାନଙ୍କ ସହିତ ସମାନ ବୋଲି ଜାଣିଲେ । ଜର୍ଜ 'ବୁଫୋଁ' ନାମକ ଜଣେ ଫରାସୀ ପଣ୍ଡିତ କହିଲେ ଯେ ମଣିଷଜାତିର ପ୍ରାଣୀମାନଙ୍କ ସହିତ ଘନିଷ୍ଠ ସମ୍ବନ୍ଧ ଅଛି । ଆଉ ଜଣେ ଫରାସୀ ପଣ୍ଡିତ 'ଲାମାର୍କ' ପ୍ରମାଣ କରି ଦେଖାଇଲେ ଯେ ମଣିଷର ପୂର୍ବପୁରୁଷ ହେଉଛି ମାଙ୍କଡ଼ ଜାତି ।

କିନ୍ତୁ ସବୁ ଶେଷରେ ଇଂରେଜ ପଣ୍ଡିତ ଡାରଉଇନ୍ ଗୋଟିଏ ବହି ବାହାର କଲେ । ତା ନାଁ ହେଉଛି "ଜୀବଜଗତର ଉତ୍ପତ୍ତି" । ସେଇ ବହିରେ ସେ ସବୁ ପ୍ରାଣୀଙ୍କର ଓ ମଣିଷ ଜାତିର ଜନ୍ମ

ବିଷୟରେ ସବୁକଥା ଲେଖିଥିଲେ । ତାଙ୍କ ମତରେ ପ୍ରଥମେ ପୃଥିବୀରେ ଆଜକାଲିର ମଣିଷ କମ୍ବା ପ୍ରାଣୀ, କେହି ନ ଥିଲେ । ପୋହଳା ପରି ସରଳ ଓ ଶ୍ରେଷ୍ଠ ପ୍ରାଣୀ, ମଞ୍ଜିରୁ ଗଛ ହେଲା ପରି ଧୀରେ ଧୀରେ ବିକାଶଲାଭ କଲେ ଓ ଶେଷରେ ମଣିଷଜାତି ମାଙ୍କଡ଼ର ନୂଆରୂପ ଭାବରେ ପୃଥିବୀ ଉପରେ ଦେଖାଦେଲା ।

---

## ଆମେ ଓ ଆମର ବାପ ଅଜା

ଭୋଳାଦାସେ ରେଲଗାଡ଼ିରେ ବସିଲେ । ବସ୍ଠ ଇଞ୍ଜିନ୍ ଭକ୍ ଭକ୍ ଧୂଆଁ ଛାଡ଼ି ହଜାର ହଜାର ଲୋକଙ୍କୁ ଘେନି ଘଣ୍ଟାକୁ ଷାଠିଏ ମାଇଲ ଗତିରେ ଚାଲିଲା ।

ଭୋଳାଦାସେ କହିଲେ "ସରକାର ଘର କଣ ନ କରିଚ ?"

ସତକଥା କହିବାକୁ ଗଲେ ସରକାରଘର କିଛି କରି ନାହିଁ । ବଡ଼ ବଡ଼ ପାଠୁଆ ଲୋକେ ନୂଆ ନୂଆ ବାଟ ବାହାର କରୁଚନ୍ତି । ରେଲଗାଡ଼ିରେ ଧୂଆଁର ଶକ୍ତି କାମରେ ଲାଗୁଚି । କୋଇଲା ଓ ପାଣି ଦ୍ୱାରା ଧୂଆଁ ତିଆରି ହୋଇ ତାକୁ ରୁନ୍ଧି ଦିଆଯାଉଚି । ଧୂଆଁ ଠେଲୁଚି—ଗାଡ଼ି ଚାଲୁଚି ।

ଆଜି ମଣିଷ ନୂଆ ନୂଆ କଥା କରି ଚନ୍ଦ୍ରକୁ ଗଲାଣି କିନ୍ତୁ ଆମେ ଭାଗ୍ୟକୁ ଆଦରି ଯୋଉଠି ସେଇଠି ରହିଚୁ । ମଣିଷ ନିଜ ହାତରେ ନିଜ ଭାଗ୍ୟ ଗଢ଼ୁଚି । କିମିତି ? ପାଠଶାଠ ପଢ଼ି ସେ ପ୍ରକୃତି ବିଷୟରେ ଜାଣୁଚି । ପ୍ରକୃତି କୋଉ ନିୟମରେ ଚାଲୁଚି, ତା ବୁଝୁଚି ।

ତା ପରେ ତାକୁ ନିଜ କାମରେ ଲଗାଉଛି । ସତ କହିଲେ ମଣିଷ ନିଜେ ନିଜକୁ ଗଢ଼ିଛି ଓ ଗଢ଼ୁଛି ।

ମଣିଷ ନିଜେ ନିଜକୁ କିମିତି ଗଢ଼ୁଛି ? ବୈଜ୍ଞାନିକମାନେ କହନ୍ତି ହଜାର ହଜାର ବର୍ଷ ତଳେ ମଣିଷ ଆଜି ଯେମିତି ଅଛି ସେମିତି ନ ଥିଲା । ଲକ୍ଷ ଲକ୍ଷ ବର୍ଷ ତଳେ ସେ ଥିଲା ବଣୁଆ ଶିକାରୀ ଓ କୋଟି କୋଟି ବର୍ଷ ତଳେ ଥିଲା ମାଙ୍କଡ଼— ! ତେବେ ଏତେ ଦିନ ତଳେ କଅଣ ଆମ ବାପ ଅଜା ଥିଲେ ମାଙ୍କଡ଼ ?

ଏକଥା ଅସମ୍ଭବ ମନେହୁଏ । କିନ୍ତୁ ମଣିଷ ଓ ବିଭିନ୍ନ ପ୍ରାଣୀ ମଧ୍ୟରେ ସମାନତାକୁ ଦେଖି ପଣ୍ଡିତମାନେ ଯାହା କହନ୍ତି ତାକୁ ତ ଆଉ ଫୋପାଡ଼ି ଦେବା ନାହିଁ !

ମଣିଷ ଓ ପ୍ରାଣୀମାନଙ୍କ ଭିତରେ ଅନେକ ସମାନତା ଅଛି । ହିନ୍ଦୁ ମତରେ ଭଗବାନ ଆଗେ ମାଛ ରୂପରେ ଥିଲେ—ତା ପରେ କଇଁଚ—ତା ପରେ ବାରହା—ତା ପରେ ସିଂହ ରୂପ ଧରି ଏଇପରି ଦଶରୂପ ଧରିଲେ । ପଣ୍ଡିତମାନେ ଆଜି କହୁଛନ୍ତି ଆଗେ ପୃଥିବୀରେ ଶ୍ରେଷ୍ଠ ଜଳଜନ୍ତୁ, ତା ପରେ ଜଳଚର, ମାଛ ପ୍ରଭୃତି—ତା ପରେ ଜଳ ଓ ଥଳ ଦୁଇ ଜାଗାରେ ରହୁଥିବା କଇଁଚ ପ୍ରଭୃତି, ତା ପରେ ପଶୁ—ଯେପରି କି ବାରହା ଓ ତାଙ୍କୁ ଖାଇ ବଞ୍ଚୁଥିବା ହିଂସ୍ର ଜନ୍ତୁ ବାଘ ସିଂହ ପ୍ରଭୃତି ସବୁ ଶେଷରେ ହେଲେ ।

ମଣିଷଟି ତାର ବାପ ଅଜାଙ୍କ ଗୁଣ କିଛି କିଛି ଥାଏ । ଏ କ୍ଷେତ୍ରରେ ପଶୁପକ୍ଷୀମାନଙ୍କ ସମ୍ବନ୍ଧ ବି ସେଇପରି କିଛି

କରୁ ସମାନତା ଅଛି । ଉଦାହରଣ ସ୍ୱରୂପ ଗୋଟାଏ ଛେଳକୁ ନିଆଯାଉ । ଗୁରୁଣ୍ଡି ଥିବା ପିଲା ଓ ଛେଳର କଙ୍କାଳକୁ ଦେଖ—। ଦୁହେଁ ଏକାପରି ।

ପଶୁର କଙ୍କାଳ





ଗୁରୁଣ୍ଡି ଥିବା ମଣିଷର କଙ୍କାଳ

ପଶୁପକ୍ଷୀ ଇତ୍ୟାଦି ସବୁ ଜନ୍ତୁ ନିଶ୍ୱାସ ମାରନ୍ତି, ଆମେ ବି ମାରୁ । ଜୀବଜନ୍ତୁମାନେ ଖାଦ୍ୟ ଖାଆନ୍ତି ଓ ପାଣି ପିଅନ୍ତି । ଆମେ ବି ସେଇଆ କରୁ । ସେମାନେ ଛୁଆ ଜନ୍ମ କରନ୍ତି—ଆମେ ବି

କରୁ । ସେମାନଙ୍କର ଯିମିତି କଲିଜା, ମଗଜ, ମାଂସ ଓ ହାଡ଼ ଅଛି, ଆମର ବି ସେଇମିତି ସେ ସବୁ ଅଛି ।

କିନ୍ତୁ ମଣିଷର ହାତ ଗୋଡ଼ କଣ ଜୀବଜନ୍ତୁଙ୍କ ହାତଗୋଡ଼ ପରି ? ଘୋଡ଼ାର ପାଦ କଣ ମଣିଷର ପାଦପରି ? ହଂସ ପାଦ କଣ ମଣିଷ ପାଦ ସଙ୍ଗେ ସମାନ ? ବାଦୁଡ଼ିପରି ଡେଣା କଣ ମଣିଷର ଅଛି ?

ଏ ପ୍ରଶ୍ନର ଉତ୍ତର ବୈଜ୍ଞାନିକମାନେ ଦେଉଛନ୍ତି । ଘୋଡ଼ା ଗୋଡ଼ର ଗଠନ ଠିକ୍ ମଣିଷ ଗୋଡ଼ର ଗଠନ ପରି । ହଂସ ପାଦକୁ ଦେଖିଲେ ତା ଦେହରେ ଆଙ୍ଗୁଠି ଥିବା ପରି ଜଣାଯାଏ । ବାଦୁଡ଼ିର ତ ଡେଣା ମଣିଷର ହାତ ସଙ୍ଗେ ଅନେକ ବିଷୟରେ ସମାନ ।

ପୁଣି ମଣିଷ ପଶୁ ସାଥିରେ ରହି ପଶୁ ପାଲଟିଯାଏ । ଦକ୍ଷିଣ ଆଫ୍ରିକାରେ ଗୋଟିଏ ନିଗ୍ରୋ ବାଳକକୁ ଦଳେ ମାଙ୍କଡ଼ ଟେକି ନେଇଗଲେ ୧୯୩୯ରେ । ବାରବରଷ ପର୍ଯ୍ୟନ୍ତ ସେ ଥିଲା ସେଇ-ମାନଙ୍କ ସଙ୍ଗେ । ଶିକାରୀମାନେ ବାରବର୍ଷ ପରେ ଜଙ୍ଗଲରେ ଯେତେବେଳେ ତାକୁ ଦେଖନ୍ତି ସେ ମାଙ୍କଡ଼ ଭଳି ଚିତ୍କାର ହେଲା । ସେ ହାତ ଓ ଗୋଡ଼ ସାହାଯ୍ୟରେ ମାଙ୍କଡ଼ଙ୍କ ପରି ବୁଲୁଥିଲା ଓ ବେଶ୍ ବଡ଼ ବଡ଼ ଗଛରେ ଚଢ଼ି ଡିଆଁ ଡେଇଁ କରୁଥିଲା ।

ଏତେ ଦୂରକୁ ଯିବା ବି ଦରକାର ନାହିଁ । ଆମ ମେଦିନୀପୁର ଅଞ୍ଚଳରେ ଗୋଟାଏ ଗଧିଆ ବାଳକ ଧରା ଯାଇଥିଲା । ମଣିଷପିଲାକୁ ପିଲାଦିନରୁ ଗୋଟାଏ ମାଈଗଧିଆ ଟେକି ନେଇଥିଲା । ସେ ଗଧିଆ-ବାଳକ ଗଧିଆଙ୍କପରି ବୁଲି ବୁଲି କରୁଥିଲା—ଏପରି କି କଞ୍ଚାମାଂସ ମଧ୍ୟ ଖାଉଥିଲା । ଗଧିଆଙ୍କ ସଙ୍ଗେ ରହି ତାର ସ୍ୱଭାବ ପୁରା ବଦଳି ଗଲା ।

ପୁଣି ମଣିଷ ଜାତିରେ ଥରେ ଥରେ ପଶୁ ଲକ୍ଷଣ ପୁରାପୁରି ଦେଖାଯାଏ । ୧୮୭୮ରେ ଜର୍ମାନୀରେ ଗୋଟାଏ ପିଲା ଜନ୍ମ ହୋଇ-

ଥିଲା । ତାର ଚାରିଇଞ୍ଚ ଲମ୍ବ ଲାଞ୍ଜଟିଏ ଥିଲା । ରୁଷିଆରେ ଆଣ୍ଡ୍ରି ସ୍ଟାନ ନାମକ ଜଣେ ପୁରୁଷକୁ ଦେଖିଲେ ସେ ମଣିଷ କି ପଶୁ ଜଣାପଡ଼ୁ ନଥିଲା—କାରଣ ଭାଲୁପରି ତାର ଦେହର ଚାରିଆଡ଼େ ରୁମଗୁଡ଼ାକ ପୂରି ରହିଥିଲା । ମେକ୍ସିକୋ ଦେଶର ଜଣେ ନର୍ତ୍ତକୀ ଦେହରେ ମଧ୍ୟ ଭାଲୁପରି ରୁମ ଭର୍ତ୍ତି ହୋଇ ରହିଥିଲା । ଏହିପରି ଛେଳିମୁଣ୍ଡିଆ, ହଂସପାଦିଆ ପିଲା ଜନ୍ମହେବାର ଆମେ ବରାବର ଶୁଣୁଚୁ ।



ରୁମରୁମିଆ ପିଲା     ଲାଙ୍ଗୁଡ଼ଥିବା ପିଲା     ମେକ୍ସିକୋ ନର୍ତ୍ତକୀ

ପଶୁରୁ ମଣିଷ ଜନ୍ମ ନେଇଚି ଏକଥା ବୈଜ୍ଞାନିକମାନେ ନାନା ବିଚିତ୍ର ଢଙ୍ଗରେ ପ୍ରମାଣ କରନ୍ତି । ଘାସ ଇତ୍ୟାଦି ଜୀର୍ଣ୍ଣ କରିବାରେ କାମରେ ଲାଗିବାପାଇଁ ପଶୁର "ଆପେଣ୍ଡିକ୍ସ" ନାମକ ଯନ୍ତ୍ର ପେଟ ଭିତରେ ଥାଏ । କିନ୍ତୁ ମଣିଷର ତାହା ଦରକାର ନଥିଲେ ମଧ୍ୟ

ଅଛୁ । ସେ ପୁଣି ବଢ଼ିଗଲେ ବେଗଡୁଏ ଓ ଡାକ୍ତରମାନେ ତାକୁ କାଟି ମଣିଷକୁ ମରଣ ମୁହଁରୁ ବଞ୍ଚାନ୍ତି ।

ଆଜି ମଧ୍ୟ ମଣିଷ ପିଲାକୁ ମା ପେଟରୁ ଦେଖି ଓ ଅନ୍ୟାନ୍ୟ ପଶୁପକ୍ଷୀମାନଙ୍କ ସହିତ ତାକୁ ତୁଳନା କରି ପଣ୍ଡିତମାନେ କହନ୍ତି ଯେ ପଶୁମାନଙ୍କର ଯେପରି ଗର୍ଭରେ ମା' ପେଟରେ ପିଲା ବଢ଼େ ମଣିଷର ମଧ୍ୟ ଠିକ୍ ସେହିପରି ହୁଏ ।

ପ୍ରକୃତରେ ଦେଖିଲେ ଜଣାଯାଏ ଯେ ବହୁ ପୂର୍ବକାଳୁ ଆଜି-କାଲି ପାଣିରେ ଦେଖାଯାଉଥିବା ଶିଉଳି ଭଳି ଧଳା ଦାକୁଆ ଜୀବରୁ ଯେପରି ସବୁ ଆରମ୍ଭ ହେଲା—ମା ପେଟରେ ପ୍ରଥମେ ମଣିଷ ଠିକ୍ ସେହିପରି ଥାଏ ।

ଉଦାହରଣ ସ୍ୱରୂପ ମା ପେଟରେ ମଣିଷ ପିଲାର ମାଛ ଭଳି ଗାଲସି ଥିବାପରି ଜଣାଯାଏ । କେବଳ ସେତିକି ନୁହେଁ, ଗର୍ଭରେ ଥିଲାବେଳେ ତାର ଲାଞ୍ଜ ଥାଏ ଓ ତା ଦେହଯାକ ରୁମ ଥାଏ । ଏଇ ଘଟଣା ମଣିଷ ଯେ ଦିନେ ପଶୁ ଥିଲା ତାହା ସଫା ପ୍ରମାଣ କରିଦେଉଛି ।

ଏହିପରି ଲକ୍ଷ ଲକ୍ଷ ଉଦାହରଣ ମିଳିବ । ଏଥିରୁ କଣ ଅନୁମାନ କରିପିବ ? ମଣିଷ ଜାତିର ପୂର୍ବପୁରୁଷେ ଥିଲେ ପଶୁ—ପଶୁର ପୂର୍ବପୁରୁଷ ଥିଲେ ସରୀସୃପ ଓ ସାପ ପ୍ରଭୃତିଙ୍କ ପୂର୍ବପୁରୁଷ ଥିଲେ ମାଛ ।

ପ୍ରକୃତରେ ଆମଭିତରେ ଏବେ ବି ପଶୁପକ୍ଷୀଙ୍କ ସ୍ୱଭାବ ଅଛି । ଆମେ କୁକୁର ପରି କଳିକରୁ, ମାଙ୍କଡ଼ପରି ଖାଉ ଓ ବାୟାଚଢ଼େଇ ପରି ବସାବାନ୍ଧି ରହୁ ।

ଆମ ଭିତରେ ବି ବାଘ ଭାଲୁଙ୍କଠାରୁ ଅଧିକ ହିଂସ୍ର ଲୋକ ଅଛନ୍ତି ।

---

# ପଶୁପକ୍ଷୀ ବିଭା ହୁଅନ୍ତି — ଗୃହ ବି କରନ୍ତି

ଚୂଲାମୁହାଁ କାଙ୍କ କଥା ଆମେ ଶୁଣିଛୁ । ବିଲୁଆର ବୁଦ୍ଧି ସମ୍ବନ୍ଧରେ ମଧ୍ୟ କାହାଣୀ ଶୁଣିବାକୁ ମିଳେ । ଏହିପରି ନାନା ପ୍ରାଣୀମାନଙ୍କ ସମ୍ବନ୍ଧରେ ଆମ ପୁରାଣକାରମାନେ ନାନା ମଜା ଗପ ଆମକୁ କହିଯାଇଛନ୍ତି ।

ଗପ ହେଲେ ବି ସେଗୁଡ଼ିକରେ ଅନେକ ସତ ଥାଏ । ଅନେକ ପଶୁପକ୍ଷୀଙ୍କି ଦେଖିଲେ ସେମାନେ ଠିକ୍ ମଣିଷ ପରି କାମ କରୁଥିବାର ଜଣାଯାଏ ।

ଉଦାହରଣ ସ୍ୱରୂପ ବତକ କଥା ଧରିଯାଉ । ବତକ ଓ ଗୋଟିଏ ବତକୀ ଗୋଟିଏ ପୋଖରୀରେ ରହନ୍ତି, ସ୍ତ୍ରୀ ପୁରୁଷ ପରି । ଏପରି କି ସେମାନଙ୍କ ଭିତରୁ ଗୋଟିଏ ମରିଗଲେ ଅନ୍ୟଟି ନଖାଇ ନପିଇ ମରିଯାଏ ।

ବାୟା ଚଢ଼େଇର କିନ୍ତୁ ଅଲଗା କଥା । ସେ ଅନେକ ମାଇପ ବାହାହୁଏ । ଅନେକ ବସା ନିଜେ ତିଆରି କରି ପ୍ରତ୍ୟେକଟିରେ ଗୋଟିଏ ଗୋଟିଏ ମାଇପ ରଖିଥାଏ । ସଉତୁଣୀମାନେ ଦୂରରେ ଥାଆନ୍ତି—ଦେଖାସାକ୍ଷାତ୍ କମ୍ ହୁଏ ସେମାନଙ୍କ ଭିତରେ । ତେଣୁ ବାୟା ବେଶ୍ ମଜାରେ ଥାଏ । ବାୟାର କି ଯାଏ ନା ବାଆ କଲେ ବସା ଦୋହଲୁ ଥାଏ— ।

ମାଛ କଥା ଦେଖ । ମାଛ ନିଜ ଛୁଆମାନଙ୍କୁ ଖାଇଯାଏ । ଶେଉଳ ମାଛର ଏଥିପାଇଁ ଭାରି ବଦନାମ । କିନ୍ତୁ ମାଈ ଓ ଅଣ୍ଡିରା

ମାଛ ସେମାନଙ୍କ ଛୁଆ ମନ୍ଦାକୁ ଅନ୍ୟମାନଙ୍କ ଆକ୍ରମଣରୁ ସେନାପତି ଭଳି ରକ୍ଷା କରନ୍ତି ।

ମହୁମାଛିର କଥା ପୂରା ଅଲଗା । ଫେଣା ଭିତରେ ଗୋଟିଏ ରାଣୀ ଥାଏ । ସେଇ ଗୋଟିକ ମାଈ । ଆଉ ଅନେକ ଥାଆନ୍ତି ଅଣ୍ଡିରା ଓ ନପୁଂସକ ।

ପଶୁପକ୍ଷୀମାନଙ୍କର ସବୁ ଲକ୍ଷଣ ଆମଠାରେ ଦେଖାଯାଏ । ଆମ ଭିତରେ କେତେକ ଭଳି ଲୋକ ଅଛନ୍ତି—ବାୟା ଚଢ଼େଇ ପରି ଅଛନ୍ତି ଓ ମାଇପିଙ୍କ ଭିତରେ ପୃଥିବୀରେ ଏପରି ମାଇପି ଅଛନ୍ତି ଯେଉଁମାନେ କି ରାଣୀ ମହୁମାଛି ପରି ଅନେକ ଅଣ୍ଡିରା ରଖନ୍ତି ।

ମହୁମାଛି ଅନେକ ଦିଗରେ ଗୋଟିଏ ଅଦ୍ଭୁତ ଜୀବ । ମହୁମାଛି ଆମ ଭିତରେ ଥିବା କେତେକ କୃପଣଙ୍କ ଭଳି ତ ସବୁବେଳେ ମହୁ ସଂଚୟ କରେ । ତା ଛଡ଼ା ପଣ୍ଡିତମାନେ ମହୁମାଛି ସମ୍ବନ୍ଧରେ ଅନେକ ମଜା କଥା କହନ୍ତି । ଧର ଯଦି ଗୋଟାଏ ମହୁମାଛି ଫୁଲ ଗଛଟିଏ ଦେଖିଲା ସେ ବସାକୁ ଉଡ଼ିଆସେ । ଡେଣା ହଲାଇ ସେ ନାଚେ । ତା ନାଚରୁ ଅନ୍ୟମାନେ କେଉଁଦିଗରେ ଫୁଲଗଛ ଅଛି ଜାଣିପାରି ସେଇଆଡ଼କୁ ଯାଆନ୍ତି । ଅନ୍ୟମାନଙ୍କୁ ଖବର ଦେବାରେ ଏ କଣ କମ୍ ଚାଲାକି—ମହୁମାଛି ପରି ଜୀବ ପକ୍ଷରେ ।

ଆମେ ନିଜ ଘରେ ପିମ୍ପୁଡ଼ିମାନଙ୍କୁ ସବୁବେଳେ ଦେଖୁ । ଗୋଟାଏ ପିମ୍ପୁଡ଼ି ଯଦି ଚିନି ଜାଗା ପାଇଗଲା ତେବେ ସେ ସାଙ୍ଗେ ସାଙ୍ଗେ ବସାକୁ ଚାଲିଯାଏ—କମିତି ସେ ଖବର ଦିଏ କେଜାଣି ଅନ୍ୟ ପିମ୍ପୁଡ଼ିମାନେ ତାକୁ ଶୁଙ୍ଘି ଶୁଙ୍ଘି ଜାଣିପାଆନ୍ତି ଯେ ସେ ମାଲ ପାଇଚି । ସେ ଆଗେ ଆଗେ ଚାଲେ—ତା ପରେ ଚାଲନ୍ତି ଧାଡ଼ି ।

କେଣ୍—ଶେଷକୁ ସମସ୍ତେ ମିଳି ମାଲଡକ ଲୁଟିକରି ଗୋଟି ଗୋଟିଏ ଗୋଟିଏ ତୁଣ୍ଡରେ ଧରି ଗାତ ଭିତରକୁ ନେଇ ପଳାନ୍ତି । ଡକାପୁଅ ଦଳଙ୍କୁ ତ ଏମାନେ ବୁଦ୍ଧିରେ ପରାସ୍ତ କରିଦେବେ ।

ଖାଲି ସେତିକି ନୁହେଁ—ପିମ୍ପୁଡ଼ି କୃଷି ବି କରୁଥିବାର ଦେଖାଯାଇଛି । ଆମେ ଭାତ ଖାଉ—ଧାନ କୃଷି କରୁ । ମାଛ ଖାଉ—ମାଛ କୃଷି କରୁ । ଏଣ୍ଡି ଯୋଗାଡ଼ିଇ ହେଉ, ତେଣୁ ଏଣ୍ଡି କୃଷି କରୁ । ପିମ୍ପୁଡ଼ିର ଏକ ପ୍ରକାର ଅତି କ୍ଷୁଦ୍ର ଛତୁ ଅତି ପ୍ରିୟ ଖାଦ୍ୟ । ସେ ଛତୁ ଗଛର ପତର ଉପରେ ଫିମ୍ପି ମାଇଲା ପରି ହୁଏ । ପିମ୍ପୁଡ଼ି ପତ୍ରକୁ କାଟି ତାକୁ ଗାତ ଭିତରେ ନେଇ ରଖେ । ତା ଉପରେ ଛତୁ ହେଲେ ଖାଦ୍ୟ ନ ଥିବା ସମୟରେ ତାକୁ ଖାଏ ।

ଆମଭଳି ପଶୁପକ୍ଷୀମାନଙ୍କ ଭିତରେ ଚୋର ଅଛନ୍ତି—ଭଲ ଲୋକ ବି ଅଛନ୍ତି ।

ଗୁଣ୍ଡୁଚି ମୂଷା କେଡ଼େ ସୁନ୍ଦର ଜୀବ । ତାକୁ ରାମଚନ୍ଦ୍ର ସ୍ନେହରେ ଆଉଁସି ଦେଇଥିଲେ ବୋଲି କଥା ଅଛି—ସେଇଥିପାଇଁ ତା ପିଠିରେ ଗାର ଥାଏ । ଏଡ଼େ ସୁନ୍ଦର ଜୀବକୁ କିଏ ଅବା ଆଉଁସି ନ ଦେବ ?

କିନ୍ତୁ ଗୁଣ୍ଡୁଚି ମୂଷା ଚୋରି କରେ । କାଠହଣା ଚଢ଼େଇ ବୁଟ କିମ୍ବା ବାଦାମ ଦାନାଟିଏ କୋଉଠୁ ପାଇଲେ ତାକୁ ଆଣି ଗଛରେ କଣାକରି ତା ଭିତରେ ଲୁଚେଇ ରଖେ । କାଠ ହାଣିଲାବେଳେ ଗୁଣ୍ଡୁଚି ମୂଷା ଉହାଡ଼ରୁ ଦେଖୁଥାଏ । କାଠହଣା ଖାଦ୍ୟଟି ଲୁଚେଇ

ଦେଇ ଗୁଳଗଲେ ଗୁଣ୍ଡୁଚି ଖପ୍‌କରି ଡେଇଁ ଗଛରେ ଚଢ଼ି ସେତକ ନେଇ ଚମ୍ପଟ୍ କରେ ।



ଶ୍ୱେତ ଗୁଣ୍ଡୁଚି

କେତୁ ଚଢ଼େଇମାନଙ୍କ ଭିତରେ ଅନେକ ଦସ୍ୟୁ ଚଢ଼େଇ ଅଛନ୍ତି । ଏକ ପ୍ରକାର ଚଢ଼େଇ ଖାଦ୍ୟ ନେଇ ବସାକୁ ଯାଉଥାଏ । ଥଣ୍ଟରେ ତାର ପୋକଟିଏ କି ଜୋକଟିଏ ଧରିଥାଏ ସେ । ତା ନିଜ ବସାରେ ପହଞ୍ଚିବା ପୂର୍ବରୁ ଦୈବାତ ଯଦି ବାଟରେ ଅନ୍ୟ ବସାରେ ସେ ହାବୁଡ଼ିଗଲା—ସେ ବସାରେ ଥିବା ପିଲାଙ୍କ ମେଲା ପାଟି ଦେଖି

ସେ ସବୁ ଭୁଲିଯାଏ । ନିଜ ପରି ଜ୍ଞାନ ନ କରି ସେ ନିଜ ଥଣ୍ଟରେ ଧରିଥିବା ଖାଦ୍ୟ ସେଇ ଛୁଆଙ୍କୁ ଦେଇ ଉଡ଼ିଯାଏ ।



## ଦୟାଳୁ ଚଢ଼େଇ

ପଶୁପକ୍ଷୀମାନଙ୍କ ପ୍ରତି ନିର୍ଦ୍ଦୟ ନ ହୋଇ ତାଙ୍କ କାର୍ଯ୍ୟ-କଳାପକୁ ଲକ୍ଷ୍ୟକଲେ ଆମେ ଅନେକ ଆନନ୍ଦ ଓ ଆମୋଦ ପାଇବା । ଆମେରିକାରେ ଓ୍ୱାଲ୍ଟ ଡିଜ୍ନେ ନାମକ ଜଣେ ବିଖ୍ୟାତ ଲୋକ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚକରି ଗୋଟିଏ ବିରାଟ ଜାଗାରେ ପଶୁଶାଳା ତିଆରି କରିଛନ୍ତି । ସେଠି ମହୁମାଛିଠାରୁ ସିଂହ ପର୍ଯ୍ୟନ୍ତ, ଧଳା ଭାଲୁଠାରୁ ମୟୂର ପର୍ଯ୍ୟନ୍ତ ସବୁ ପ୍ରକାର ଜୀବ ଅଛନ୍ତି । ପଶୁପକ୍ଷୀମାନଙ୍କ ଗତିମତି ଦେଖି ସେ ପତ୍ର ପତ୍ରିକାରେ ଚିତ୍ର ସାହାଯ୍ୟରେ ଏଇମିତି ଅନେକ ମଜାକଥା କହନ୍ତି । ଏଥିରୁ ତାଙ୍କର ଲକ୍ଷ ଲକ୍ଷ ଟଙ୍କା ବି ଆଦାୟ ହଉଚି ଓ ଲୋକେ କୋଟି କୋଟି ସଂଖ୍ୟାରେ ତାକୁ ପଢ଼ି ଆନନ୍ଦ ଲାଭ କରୁଛନ୍ତି ।

ଏପରି ଅନେକ ସମାନତା ପଶୁପକ୍ଷୀଙ୍କ ଜୀବନ ଓ ମଣିଷ ଜୀବନ ଭିତରେ ଦେଖାଯିବାରୁ ମଣିଷ ଓ ପଶୁପକ୍ଷୀ ଗୋଟାଏ ଜାଗାରୁ ବାହାରିଛନ୍ତି ବୋଲି ପଣ୍ଡିତମାନେ କହୁଛନ୍ତି । ଏପରି କି ଗଛଲତାମାନଙ୍କର ମଧ୍ୟ ଆମ ସହିତ ଅନେକ ସମାନତା ଅଛି । ଆମେ ନିଶ୍ୱାସ ନେଉ ଓ ଛାଡୁ । ପଶୁପକ୍ଷୀମାନେ ନିଶ୍ୱାସ ନେବା ଆଣିବା କରୁଥିବାର ବି ଆମେ ଜାଣୁ । ଆମେମାନେ ନିଶ୍ୱାସରେ ନେଉ ଏକ ପ୍ରକାର ନିର୍ମଳ ବାୟୁ—ଛାଡ଼ିଦେଉ ମଇଳା ପବନ । ନିର୍ମଳ ବାୟୁ ଆମ ଦେହକୁ ଶକ୍ତି ଦିଏ । କିନ୍ତୁ ବଙ୍ଗ ଦେଶର ଜଣେ ପ୍ରସିଦ୍ଧ ପଣ୍ଡିତ ଜଗଦୀଶଚନ୍ଦ୍ର ଦୁନିଆକୁ ଯନ୍ତ୍ର ସାହାଯ୍ୟରେ ଦେଖାଇ ଦେଲେ ଯେ ଗଛ ପତର ବି ଖାଲି ନିଶ୍ୱାସ ନିଅନ୍ତି ନାହିଁ—ସେମାନଙ୍କର ଅନୁଭବ କରିବାର ଶକ୍ତି ବି ଅଛି । ଲାଜକୁଳୀ ଲତା କଥା ଏଠି ଆପେ ଆପେ ମନେ ପଡ଼େ । ଟିକିଏ ଛୁଇଁଦିଅ—ବେଶ୍ —ଲାଜକୁଳୀ କୋହ୍ଳପରି ସେ ଲାଜରେ ଲେଟେଇ କୋଟେଇ ହୋଇଯାଏ ।

ପଶୁପକ୍ଷୀ ଯାହା କରନ୍ତି—ଭଲ ହେଉ ମନ୍ଦ ହେଉ—ମଣିଷ ଅଧିକାଂଶ ସେଇଆ କରେ । କିନ୍ତୁ କୌଣସି ଜୀବ ଭାଗ୍ୟ ଆଦରି ଅଳସୁଆ ହୁଏ ନାହିଁ । ପେଟପାଇଁ ସେ ବୁଦ୍ଧି, ବଳ, ବିବେକ ଲଗାଇ ପରିଶ୍ରମ କରେ ।

---

## ପଶୁ ପକ୍ଷୀ ଆମର ଗୁରୁ ଓ ଆମର ଚାକର

ଜଗନ୍ନାଥ ଦାସ ଭାଗବତରେ ଅନେକ ଜାଗାରେ ପଶୁପକ୍ଷୀଙ୍କ ଉଦାହରଣ ଦେଇ ଆମକୁ ବହୁ ଜଟିଳ କଥା ସରଳ ଭାବରେ ବୁଝାଇ ଦେଇଛନ୍ତି । 'ପେଶସ୍କାରି' କୀଟ କଥା ଆମେ ପ୍ରତିଦିନ

ଦେଖୁଛୁ । ବରୁଡ଼ ପରି କନ୍ତୁ ତା ଠାରୁ ସରୁଆ ପୋକଟିଏ ଅଛି—ସେ ସବୁବେଳେ ନାଇଡ଼ ହୁଏ । ସେ ଝିଣ୍ଟିକା ପ୍ରଭୃତି ମାରି ଆଣି ତାକୁ ନିଜ ବସାଭିତରେ ରଖି ତା ଗୃହପଟ ବନ୍ଦ କରିଦିଏ । ସେହି ମଲା ଝିଣ୍ଟିକା ଶେଷକୁ ତା ଛୁଆ ପାଲଟି ଯାଏ । ଏହା ଦେଖି ବ୍ୟାସେ କହନ୍ତି ମଲାବେଳେ ଯେଉଁ ରୂପକୁ ଭଜିବ ପର-ଜନ୍ମରେ ସେଇ ରୂପ ମିଳିବ ।

ସତକୁ ସତ ଏକଥା ପ୍ରତ୍ୟକ୍ଷରେ ଫଳ ଯାଉଛି । ଆମେ ନିଜକୁ ଯେପରି ଭାବେ ଗଢ଼ିବା, ପରଜନ୍ମ କଥା ଛାଡ଼—ଏଇ ଜନ୍ମରେ ଆମକୁ ସେହିପରି ରୂପ ମିଳିବ ।

ଏପରି ଭାବରେ ନାନା ଭାବରେ ଆମେ ପଶୁ ପକ୍ଷୀ କୀଟ ପତଙ୍ଗଠାରୁ ଶିକ୍ଷାଲାଭ କରୁଛୁ । ସମୟ ସମୟରେ ଏ ଶିକ୍ଷା ଆମ ଜୀବନରେ ବଡ଼ କାମ ଦିଏ ।

ସାବକ୍ତଗୀନଙ୍କ କଥା ଏଠାରେ କୁହାଯାଉ । ସେ ଥରେ ଜଙ୍ଗ-ଲରେ ଯାଉ ଯାଉ ଗୋଟିଏ ମିରିଗ ଛୁଆକୁ ଧରି ପକେଇଲେ । ତାକୁ ଘୋଡ଼ାରେ ଲଦି ନିଜେ ବସି ସେ ଚାଲିବାକୁ ଲାଗିଲେ । ମିରିଗ ଛୁଆକୁ ହୁଏ ତ ସେ କାଟି ମାଉଁସ କରି ଖାଇ ଥାଆନ୍ତେ । କିନ୍ତୁ ଅନେକ ଦୂର ଯିବା ପରେ ସେ ପଛକୁ ଫେରି ଚାହିଁ ଦେଖିଲେ ଯେ ମୃଗୁଣୀ ଆକୁଳ ହୋଇ ଚାହିଁ ଚାହିଁ ତାଙ୍କ ପଛେ ପଛେ ଚାଲିଛି ।

ସେହିଠାରୁ ତାଙ୍କର କଠିନ ହୃଦୟ ତରଳିଗଲା । ସେ ମିରିଗ ଛୁଆଟିକି ଛାଡ଼ିଦେଲେ । କିନ୍ତୁ ତା ପରେ ସେ ଏପରି କାମକଲେ ଯେ ଦୁନିଆରେ ଜଣେ ବଡ଼ଲୋକ ରୂପେ ସେ ଶେଷକୁ ଗଣାହେଲେ ।

ଆଉ ଗୋଟିଏ କଥାରୁ ସେଇପରି ଶିକ୍ଷା ମିଳେ । ଇଂଲଣ୍ଡରେ ଜଣେ ଯୋଦ୍ଧା ଥିଲେ । ସେ ବାରମ୍ବାର ପରାସ୍ତ ହେଲେ । ଥରକୁ

ଥର ପରାସ୍ତ ହୋଇ ସେ ଭାବିଲେ ଯେ ସେ ଆଉ ଜିଣିପାରିବେ ନାହିଁ । ଜୀବନ ହାରିଦେବାକୁ ସେ ପ୍ରସ୍ତୁତ ହେଲେ । ଶେଷ ଥରକ ହାରିଯାଇ ସେ ଗୋଟାଏ ଗୁହାଭିତରେ ଆଶ୍ରୟ ନେଲେ । ସେଇ ଗୁହା ଦୁଆରରେ ଗୋଟାଏ ବୁଢ଼ିଆଣୀ ଜାଲ ବୁଣୁଥିଲା । କିନ୍ତୁ ଥରକୁ ଥର ତାର ଜାଲ ଛିଣ୍ଡି ଯାଉଥିଲା । ଏପରି ଜାଲ ବୁଣି ବୁଣି ସେ ଥକି ଯାଉଥାଏ । କିନ୍ତୁ କେବେ ଭାଙ୍ଗି ଯାଉ ନ ଥାଏ । ଶେଷକୁ ସେ ଅନେକ ଥର ଚେଷ୍ଟାକରି ଜାଲଟା ବୁଣିଦେଲା ।

ବ୍ରେଶ୍—ଏତିକି ଦେଖି ସେ ସାରବନ୍ଧନରେ ଗୁହାରୁ ବାହାରି ଯୁଦ୍ଧ କଲେ ପୁଣି ଥରେ । ସେଇ ଥରକରେ ସେ ଶତ୍ରୁମାନଙ୍କୁ ଜିଣିଗଲେ ।

ଏ ତ ଗଳ୍ପ ଇତିହାସ କଥା । ଆମ ଆଖି ଆଗରେ ଦେଖିଲେ ଏଇପରି ଅନେକ କଥା ପଶୁପକ୍ଷୀମାନେ ଆମକୁ ଶିଖାନ୍ତି । ଆମ ବାପ ଅଜାଙ୍କ ପରି । ବାପା ପିଲାଦିନେ କହୁଥିଲେ, "ବାବୁ ଟିକେ ପାଠ ପଢ଼ ।" କିନ୍ତୁ ସେତେବେଳେ ଆମକୁ ଭଲ ଲାଗୁ ନ ଥିଲା । ଏବେ ବୁଝୁଚୁ ସେ ଯାହା କହୁଥିଲେ ତା' କରିବା ଉଚିତ ଥିଲା ।

ପଶୁପକ୍ଷୀ ତ ଆଉ ଆମକୁ ବାପାଙ୍କ ପରି କାହାଣୀ ଶୁଣାନ୍ତେ ନାହିଁ—। ସେମାନେ କାର୍ଯ୍ୟରେ ଯାହା ଉପଦେଶ ଦିଅନ୍ତି ତା ବୁଝିବା ଲୋକ ସିନା କେବଳ ବୁଝିବ ?

ପିମ୍ପୁଡ଼ି ଗୋଟିଏ କ୍ଷୁଦ୍ର ଜୀବ । କିନ୍ତୁ ଆମ ସିନ୍ଦୁକ ଭିତରେ ଚିନି ଥିଲେ ସେ ତାକୁ ସେଠୁ କାଢ଼ି ନେଉଚି । ଚିନି ଟିକିଏ ପାଇଁ ପିମ୍ପୁଡ଼ି ତା ଗାତ ପାଖରୁ ସିନ୍ଦୁକ ପର୍ଯ୍ୟନ୍ତ ଯେତେ ବାଟ ଯାଏ ତା ତୁଳନାରେ ଆମେ ପୁରୀରୁ ବୋମ୍ବେ ପର୍ଯ୍ୟନ୍ତ ଯାଆନ୍ତୁ । କାରଣ ଆମେ ପିମ୍ପୁଡ଼ିଠାରୁ ଲକ୍ଷ ଲକ୍ଷ ଗୁଣ ବଡ଼ ।

ସାହେବମାନେ ଆମକୁ ସାତ ସମୁଦ୍ର ପରିଆପାରିରୁ ଆସି ଶାସନ କରିଗଲେ । ବୁଦ୍ଧି ବଳିଲେ ପିମ୍ପୁଡ଼ିଠାରୁ ସେମାନେ ପ୍ରକୃତ ଶିକ୍ଷା ପାଇ ସାରିଥିଲେ ବୋଲି ଏପରି କାମ କରିପାରିଲେ ।

ପୁଣି ଦେଖିବାକୁ ଗଲେ ଆମେ ପଶୁପକ୍ଷୀଙ୍କ ପରି ରାଗୁ ହସୁ କାନ୍ଦୁ । ସେମାନେ ମଧ୍ୟ ଆମରି ପରି ରାଗନ୍ତି ହସନ୍ତି କାନ୍ଦନ୍ତି । ମା' ବିରାଡ଼ି ତା' ଛୁଆ ପାଖରେ ଥିଲାବେଳେ କୁକୁର ଆସିଲେ ସେ ଯେମିତି ପିଠି ଫୁଲାଇ ନାକ ଟୁଙ୍ଗାଡ଼ି କୁକୁରକୁ ଡରାଏ—କୁକୁଡ଼ା ବି ସେଇମିତି କରେ । ମଣିଷ ମଧ୍ୟ ବଳଶାଳୀ ଲୋକ ପାଖରେ ସେହିପରି ହୁଏ ।



( ଏ ସମସ୍ତେ—ବିଲେଇ-କୁକୁର-ସ୍ତ୍ରୀ ଓ ପଣ୍ଡିତ କହୁଛନ୍ତି—ଯା଼ଃ ଯାଃ ଦେଖିବ କେତେ ପର ପୃଷ୍ଠା ଦେଖ )







ଏଥିରୁ ଜଣାଯାଏ—ପଶୁପକ୍ଷୀମାନଙ୍କ ସମ୍ବନ୍ଧରେ ଜାଣିବା ମାନେ ଆମେ ନିଜେ ନିଜ ସମ୍ବନ୍ଧରେ ଜାଣିବା । ମଣିଷ ଜ୍ଞାନ ବଳରେ ଶକ୍ତି ପାଏ । ଶକ୍ତିକୁ କାର୍ଯ୍ୟରେ ଲଗାଇ ସେ ନିଜର ଓ ଅନ୍ୟମାନଙ୍କର ଉନ୍ନତି କରେ ।

କିନ୍ତୁ ପଶୁପକ୍ଷୀଙ୍କ ସମ୍ବନ୍ଧରେ ଜାଣିଲେ ଆମେ କି ଉନ୍ନତି କରିପାରିବା—କେତେ କେତେ ଦ୍ରବ୍ୟ ତ ପଶୁରୁ ପାଉଛୁ । କଥା ଛଳରେ ଏଠି ସେଇକଥା ଦେଖାଯାଉ ।

ଆମେ ପଶୁପକ୍ଷୀମାନଙ୍କ ଭିତରୁ ଅନେକଙ୍କୁ ଚାକର କରି ରଖିଛୁ । ସେମାନେ ଆମ ପାଇଁ ଖାଦ୍ୟ ଯୋଗାଡ଼ କରୁଛନ୍ତି, ଆମକୁ ସାହାଯ୍ୟ କରୁଛନ୍ତି । ତା ବଦଳରେ ତାଙ୍କର ଭଲମନ୍ଦ ଖାଇବା ପିଇବା ଆମେ ବୁଝୁଛୁ । ତାଙ୍କର ଓ ଆମ ଭିତରେ ପରସ୍ପରକୁ ସାହାଯ୍ୟ କରିବା ପାଇଁ ରାଜିନାମା ହୋଇଯାଇଛି ।

ବଳଦ ଯଦି ଆମର ହଳ ନ କରୁଥାନ୍ତା ତେବେ ମନୁଷ୍ୟ କେବେଠାରୁ ଲୋପ ପାଇ ସାରନ୍ତାଣି । ବଳଦକୁ ବରାବର କଠିନ କାମ ସୁହାଏ । ସେ ସେ କାମ ଆମପାଇଁ କରୁଛି । କୁକୁର ସ୍ୱଭାବରେ କଳହା—ଯାହାକୁ ଦେଖିବ 'ଭୌ' 'ଭୌ' କରି ତା ଆଡ଼କୁ ମିଶିଯିବ । ଏ କଥା ଜାଣି ଆମେ ତାକୁ ଘରେ ପୋଷୁ । ଅପରିଚିତ ଲୋକକୁ ଦେଖିଲେ ଭୁକିବା ତାର ସ୍ୱଭାବ । ତାରି ଅଜାଣତରେ ସେ ଆମକୁ ଚୋରର ଦାଉରୁ ରକ୍ଷା କରେ । ସେହିପରି ବିରାଡ଼ି ମୂଷା ମାରେ ବୋଲି ତାକୁ ଆମେ ପୋଷୁ । କିନ୍ତୁ ବିରାଡ଼ି କଣ ଆମପାଇଁ ମୂଷା ମାରେ ?

ଏଇପରି ଜ୍ଞାନଲଭ କଲେ ଲୋକେ ବେଶି କାମ କରିପାରେ । ଆମ ଦେଶର ମାଣେ ଜମିରୁ ଯେତିକି ଧାନ ମିଳୁଛି ଜାପାନରେ ତାର ଚାରି ପାଞ୍ଚ ଗୁଣ ଧାନ ଫଳୁଛି । ଜାଣିଁକି ? ତାର କାରଣ ଜାପାନୀ ଚାଷୀ ବେଶି ପରିଶ୍ରମୀ—ବେଶି ବୁଦ୍ଧିଆ । ସେ କଳକବ୍ଜା ଦ୍ୱାରା କାମ କରେ—ଆମେ ହାତରେ କରୁ । ତାର ଚାରିଗୁଣ କାମ ହେଲା ବେଳକୁ ଆମର ମୋଟେ ଏକଗୁଣ ।

ଏଠି ଗୋଟିଏ ଦୁଇଟି ମଜା କଥା ଲେଖା ଯାଉଛି । ଏ ଅଙ୍ଗେ ଲଭେଇବା କଥା । ଥରେ ଜଣେ ପଶୁଡାକ୍ତର ଷଣ୍ଢଟିଏ

କିଣିବେ ବୋଲି ଆସିଲେ । ଗାଁରେ ଦାସଙ୍କର ଭଲ ଷଣ୍ଢଟିଏ ଥିଲା । ପଶୁଡାକ୍ତର ଷଣ୍ଢ କିଣିବା ପୂର୍ବରୁ ତାର ବୟସ ଜାଣିବାକୁ ଚାହିଁଲେ—ଷଣ୍ଢ କେତୋଟି ଦାନ୍ତେଇଛି ଦେଖିବାକୁ ଚାହିଁଲେ । କିନ୍ତୁ ଷଣ୍ଢ ତା ଦାନ୍ତ ଦେଖିବାକୁ ନଚାହାନ୍ତି ନାରାଜ । ଜବରଦସ୍ତି ଦଶ ଜଣ ଷଣ୍ଢକୁ ଧଇଲେ । ଷଣ୍ଢ ବି ଉଗ୍ରମୂର୍ତ୍ତି ଧାରଣ କଲା । ଶେଷକୁ ଜଣେ ଦୁଇଜଣଙ୍କର ମରିବାଭଳି ଅବସ୍ଥା ହେଲା । କାରଣ ଷଣ୍ଢକୁ ମାଡ଼ିବସି ତଳେ ପକେଇବାକୁ ଗଲା ବେଳକୁ ସେ ଥାଏ ଥାଏ ଏପରି ଜୋର୍‌ରେ ଛୁଆଙ୍କ ଦେଉଥାଏ ଯେ ସମସ୍ତେ କାହିଁ ଦୂରରେ ପଡୁଥାନ୍ତି ।

କିନ୍ତୁ ଗାଁର ପୁରୁଖାଲୋକ ଚଉଧୁରୀଙ୍କ ଗୋଟାଏ ବୁଦ୍ଧି ଦିଶିଲା । ସେ ଧାଇଁଯାଇ ନିଜ ଗୁହାଳରୁ ଗୋବର ଟିକିଏ ନେଇ ଆସିଲେ । ଷଣ୍ଢକୁ ଶୁଙ୍ଘ ଦିଆଗଲା । ଷଣ୍ଢ ଶେଷକୁ ପାଖକୁ ଆସି ଗୋବରକୁ ଶୁଙ୍ଘି ଶୁଙ୍ଘି ଏପରି ମୁହଁ କଲା ଯେ ତାର ତଳ ଉପର ସବୁଦାନ୍ତ ଗୋଟି ଗୋଟି କରି ଗଣି ହେଲା ।

ଆଜି ଗୋଟିଏ ଘଟଣା କହୁଛି । ମୋ ଘରେ ଗୁଡ଼ିଏ ବୁଢ଼ୀଆଣି ଜାଲ ବୁଣି ବସା କରିଥାନ୍ତି । କିଛି କାମ ନ ଥିଲା ବେଳେ ମୋତେ ବୁଢ଼ିଆଣୀର ଜାଲବୁଣା, ମାଛି ଧରା, ତାର ଶିକାର, ତାର କୌଶଳ ଦେଖିବାକୁ ଭାରି ଭଲ ଲାଗେ । ମୋ ବନ୍ଧୁମାନେ ଯେତେବେଳେ ମୋ ଘରକୁ ଆସି ବୁଢ଼ିଆଣୀବସା ଦେଖନ୍ତି ଓ ଅପରିଷ୍କାର ବୋଲି କହନ୍ତି ମୁଁ ସେମାନଙ୍କୁ କିଛି କହିପାରେ ନାହିଁ—ଲଜ୍ଜିତ ହୁଏ । କିନ୍ତୁ ବୁଢ଼ିଆଣୀ ଜାଲ ଭାଙ୍ଗିବାକୁ ମୋ ଇଚ୍ଛା ହୁଏ ନାହିଁ ।

ଥରେ ମୋ କୋଠ ଦେହରେ ଗୋଟାଏ ନୂଆ ବୁଢ଼ିଆଣୀ ବସା ବାନ୍ଧିଲା । ମୁଁ ହଠାତ୍ ଏ କାଣ୍ଡ କାରଖାନା ଦେଖି ଆଶ୍ଚର୍ଯ୍ୟ ହେଲି । ଏପରି କଏ ଯକ୍ଷୀ ଆସି ମୋ କୋଠକୁ ଅକ୍ତିଆର କଲା । ତାକୁ ଦେଖିବାକୁ ଭାରି ଇଚ୍ଛା ହେଲା । ଝାଡ଼ିଲି—ଫୁଙ୍କିଲି, କାଠି

କୁଟା ଗେଞ୍ଜିଲ—କନ୍ତୁ ରାଣୀ ସାହେବାଙ୍କ ପର ବୁଦ୍ଧି ଆଣୀଟା ଯେ ଜାଲ ଭିତରେ କୋଉଠି ଥାଏ ତା ଠଉରେଇବା ମୁସ୍କିଲ ହେଲା ।

ଘଣ୍ଟାଏ କାଳ ବୃଥା ଚେଷ୍ଟା କରି ଶେଷକୁ ଗୋଟିଏ ମାଛି ଧରିଲି । ଜାଲ ଭିତରକୁ ଯେମିତି ମାଛିକୁ ପକାଇଚି—ବିଜୁଳି ବେଗରେ କାହିଁ ଥିଲା ସେ—ଆସି ସାମନାରେ ହାଜର ।

ଜୀବଜନ୍ତୁଙ୍କ ସମ୍ବନ୍ଧରେ ଯେପରି—ସବୁ କ୍ଷେତ୍ରରେ ସେହିପରି । କମାର ଲୁହାଜାଣି ପାଣି ଦିଏ । ଲୁହା ଜାଣି ପାଣି ଦେଲେ ସିନା ଲୁହା ଶକ୍ତ ହେଉଛି । ଲୁହାର ଗୁଣ ନ ବୁଝି ପାଣି ଦେଲେ କଅଣ ହେବ ? ସେଥିପାଇଁ ଦୁନିଆରେ ସବୁ ବିଷୟ ଜାଣିବାକୁ ହେବ । ଆମେ ନ ଜାଣିଲେ ଅନ୍ୟମାନେ ତାକୁ ଜାଣି ଆମ ଉପରେ ଅଧିକାର ଜମେଇବେ । ପଶୁମାନଙ୍କ ସମ୍ବନ୍ଧରେ ଆମେ ଜାଣୁଚୁ ବୋଲି ଗାଈ, ବଳଦ, କୁକୁର ସମସ୍ତଙ୍କୁ ଅକ୍ତିଆରରେ ରଖୁଚୁ । ସାପ ପରି ଜନ୍ତୁକୁ ମଧ୍ୟ ଖେଳଉଚୁ । ବାଘକୁ ସର୍କସରେ ନଚଉଚୁ । ସେହିପରି ପ୍ରକୃତିର ନିୟମ ଜାଣିଚୁ ବୋଲି ରେଲଗାଡ଼ି, ମଟରଗାଡ଼ି, କାରଖାନା ଚଳଉଚୁ ।

ଠିକ୍ ସେହିପରି ଆମେ କୋଉଠୁ ଜନ୍ମଲଭ କଲୁ—କେମିତି ଉନ୍ନତି କରୁଚୁ ଏକଥା ଜାଣିଲେ ଆମେ ନିଜକୁ ନିଜେ ଶକ୍ତିଶାଳୀ କରି ପାରିବୁ ।

---

## ମାଙ୍କଡ଼ ଓ ମଣିଷ

ପୃଥିବୀରେ ମଣିଷ ହେବା ପୂର୍ବରୁ ଯେଉଁ ଜୀବମାନେ ବାସ କରି ଆସିଛନ୍ତି ସେମାନଙ୍କ ନମୁନା ଆମେ ଆଜି ମଧ୍ୟ ଦେଖିବାକୁ ପାଉ । ବଡ଼ ବଡ଼ ପଣ୍ଡିତମାନେ ମାଟିରେ ପୋତି ହୋଇ ପଡ଼ିଥିବା

ହଜାର ହଜାର ବର୍ଷର କଙ୍କାଳକୁ ଖୋଳି ବାହାର କରି ତାକୁ ସବୁ ଦେଖି କହୁଚନ୍ତି ଯେ ପୃଥିବୀ ଉପରେ ଯେତେ ସବୁ ଜନ୍ତୁ ଦେଖା-ଯାଉଚନ୍ତି ସମସ୍ତେ ଏକ ଜାଗାରୁ ଆସିଛନ୍ତି । ଶେଷକୁ ସେମାନଙ୍କ ରୂପ ବଦଳି ବଦଳି ମଣିଷ ରୂପ ହୋଇଚି ।

ଗୋଟିଏ ଶ୍ରେଷ୍ଠ ମଞ୍ଜିକୁ ଦେଖାଯାଉ । ମଞ୍ଜିଟିକୁ ମାଟିରେ ପକେଇଲେ ତାହା ଫାଟିଯାଏ । ତା ଭିତରୁ ଗଜା ବାହାରେ । ଶେଷକୁ ତାହା ଖୁବ୍ ବଡ଼ ଗଛ ହୋଇଯାଏ । ଗଛକୁ ଦେଖିଲେ ସେ ଯେ ଦିନେ ଶ୍ରେଷ୍ଠ ମଞ୍ଜିରୁ ବାହାରିଥିଲି ତାହା ଭାବି ଆଶ୍ଚର୍ଯ୍ୟ ହେବାକୁ ହୁଏ । ସେହିପରି ଆଜିର ମଣିଷ ଓ ଦଶହଜାର ବର୍ଷ ତଳର ମଣିଷ ଭିତରେ ତେର ତଫାତ୍ । ଦଶହଜାର ବର୍ଷ ତଳର ମଣିଷ ଓ ଲକ୍ଷବର୍ଷ ତଳର ମଣିଷ ମଧ୍ୟରେ ତା ଠାରୁ ଆହୁରି ବେଶୀ ତଫାତ୍ ଦେଖାଯାଏ ।



ଆଜିର ମଣିଷ





ଦଶହଜାର ବର୍ଷ ତଳର ମଣିଷ          ଲକ୍ଷେ ବର୍ଷ ତଳର ମଣିଷ

ହନୁମାନ ରାମଙ୍କ ସହିତ ମିଶି ଅନେକ ବଡ଼ ବଡ଼ କାମ କରିଥିବା କଥା ଆମେ ରାମାୟଣରେ ପଢ଼ିଚୁ । ଠିକ୍ ମଣିଷ ଭଳି ହନୁମାନ, ବାଳି, ସୁଗ୍ରୀବ ନିଜର ସୈନ୍ୟ ସେନ ରାମଙ୍କୁ ଲଙ୍କା-ଯୁଦ୍ଧରେ ବହୁ ସାହାଯ୍ୟ କରିଥିବା କଥା ସମସ୍ତଙ୍କୁ ଜଣା । ମଣିଷ ଓ ମାଙ୍କଡ଼ ଭିତରେ ଯେଉଁ ସମାନତା ଅଛି ତାହା ଆମ ପୁରାଣକାର-ମାନେ ବୋଧେ ଭଲରୂପେ ଜାଣିଥିଲେ । ପ୍ରକୃତରେ ମାଙ୍କଡ଼ଙ୍କୁ ଖେଳେଇହେବା ବେଳେ ଦେଖିଲେ ଯେ କୌଣସି ଲୋକର ସେଇକଥା ମନେହେବ ।

କେବଳ ସେତିକି ନୁହେଁ—ମାଙ୍କଡ଼ଙ୍କୁ ଆମେ ମଣିଷ ବୋଲି କହୁ । ଜଙ୍ଗଲରେ ଯେଉଁ ବଡ଼ ବଡ଼ ମାଙ୍କଡ଼ ଜାତିର ଜୀବ ଦେଖାଯାନ୍ତି ତାଙ୍କୁ କୁହାଯାଏ "ବଣମଣିଷ" । ଆମ ଦେଶର ଦକ୍ଷିଣ-

ପୂର୍ବ ଦିଗରେ ଥିବା ବୋର୍ଣ୍ଣିଓ ଦ୍ୱୀପରେ ଏକପ୍ରକାର ମାଙ୍କଡ଼ ଦେଖାଯାନ୍ତି । ସେମାନଙ୍କର ବୁଦ୍ଧି ବିବେକ ଦେଖିଲେ ଲୋକ ଆଶ୍ଚର୍ଯ୍ୟ ହୋଇଯାଏ । ସେମାନଙ୍କୁ ଓରାଙ୍ଗ-ଓଟାଙ୍ଗ କୁହାଯାଏ । ଓରାଙ୍ଗ ଓଟାଙ୍ଗର ଅର୍ଥ ସେଠାକାର ଲୋକଙ୍କ ଭାଷାରେ 'ବଣମଣିଷ' । ଆମ ଦେଶର ଦକ୍ଷିଣ-ପଶ୍ଚିମ ଦିଗରେ ଥିବା ଆଫ୍ରିକା ମହାଦେଶରେ ଗରିଲା ଓ ଶିମ୍ପାଞ୍ଜି ନାମକ ଆଉ ଦୁଇ ପ୍ରକାର ବଣମଣିଷ ଦେଖାଯାନ୍ତି । ଆଉ ଏକପ୍ରକାର ଶ୍ରେଷ୍ଠ ବଣମଣିଷ ମଧ୍ୟ ପୃଥିବୀରେ ଅଛନ୍ତି । ସେମାନଙ୍କୁ କହନ୍ତି ବେବୁନ । ଏମାନଙ୍କ ଭିତରେ ଗରିଲାର ଦେହର ଗଢ଼ଣ ଠିକ୍ ଗୋଟିଏ ବାଲୁବାଲୁଆ ମଣିଷ ପରି ।

ବୈଜ୍ଞାନିକମାନେ ମଣିଷର ହାବଭାବ ଓ ଦେହକୁ ବଣମଣିଷ ସଙ୍ଗେ ତୁଳନା କରି କହନ୍ତି ଯେ ମଣିଷ ଓ ଏମାନଙ୍କ ଭିତରେ ଖୁବ୍ କମ୍ ଅସମାନତା ଅଛି । ବଣମଣିଷ ଏକପ୍ରକାର ମାଙ୍କଡ଼ ଛଡ଼ା ଆଉ କିଛି ନୁହେଁ ।

ଉଦାହରଣ ସ୍ୱରୂପ ବଣମଣିଷର ହାତ ଗୋଡ଼, ମୁହଁ, ନାକ, କାନ ଓ ଅନ୍ୟାନ୍ୟ ଅନେକ ଅଙ୍ଗ ମଣିଷ ଅଙ୍ଗ ସହିତ ସମାନ । ମଣିଷର ହାତ ପାପୁଲି ଓ ପାଦତଳ ସାଙ୍ଗୁଳିଆ—ବଣମଣିଷର ବି ହାତ ଗୋଡ଼ ଠିକ୍ ସେଇପରି । ମଣିଷ ପରି ବଣମଣିଷର ମଧ୍ୟ ବତିଶଟି ଦାନ୍ତ ଅଛି ଓ ଦାନ୍ତଗୁଡ଼ିକ ଠିକ୍ ମଣିଷ ଦାନ୍ତ ପରି । ବଣମଣିଷ ବା ମାଙ୍କଡ଼ ମଧ୍ୟ ଥରକେ ଗୋଟିଏ କରି ପିଲା ଜନ୍ମ କରନ୍ତି ଓ ଛୁଆ, ମା ପେଟରେ ଆଠ ନଅ ମାସ ପର୍ଯ୍ୟନ୍ତ ରହେ ।

ବଣମଣିଷ ମଧ୍ୟ ମଣିଷ ପରି ହସେ ଓ କାନ୍ଦେ—ନିଜ ଛୁଆକୁ ଖୁବ୍ ସ୍ନେହକରେ—ଏପରି କି ଅନ୍ୟ ଅନାଥ ଛୁଆଙ୍କୁ ନିଜ ଛୁଆଭଳି ପାଳେ ।



(ମଣିଷର ହସ ଓ ଯ୍ୟାର ହସ ଭିତରେ କଣ ତଫାତ୍ ଅଛି ?)

ବଣମଣିଷ, ମଣିଷ ପରି ଚକଆ କମ୍ବଳ ମଧ୍ୟ ବ୍ୟବହାର କରିବା ଦେଖାଯାଉଛି । ଏପରିକି ଗ୍ଲୁ, କଫି, ତମାଖୁ ମଧ୍ୟ ବ୍ୟବହାର କରିବା ତା ପକ୍ଷରେ ଅସମ୍ଭବ ନୁହେଁ । ରାଗିଗଲେ ବଣମଣିଷ ମଣିଷ ଉପରକୁ ଟେକାପଥର ମଧ୍ୟ ଫିଙ୍ଗେ ।

ପୁଣି ମାଙ୍କଡ଼ର ହାତଗୋଡ଼ ଓ ମଣିଷର ହାତଗୋଡ଼, ଏ ଦୁହିଁଙ୍କୁ ତୁଳନା କଲେ ଆମେ ସେମାନଙ୍କ ଭିତରେ ଥିବା ସମାନତା ଆହୁରି ଭଲଭାବରେ ବୁଝିପାରିବା । ଆମ ହାତରେ ଆମେ ଟେକା-ପଥରଠାରୁ ଆରମ୍ଭ କରି ଅନ୍ୟ ଅନେକ ଜିନିଷ ଧରିପାରୁ । ହାତରେ କାମ କରିପାରୁ । ବୋଧହୁଏ ମଣିଷ ଜାତିକୁ ପ୍ରକୃତିର ସବୁଠାରୁ ବଡ଼ ଦାନ ହେଉଛି ହାତ । ପଶୁମାନଙ୍କର ହାତ ନାହିଁ । ଭାଲୁ ଅନେକ ସମୟରେ ଦୁଇ ଗୋଡ଼ରେ ଚାଲି ହାତଦ୍ୱାରା ଆକ୍ରମଣ କଲେ ମଧ୍ୟ ତା ହାତରେ ଆଙ୍ଗୁଠି ନ ଥିବାରୁ ସେ କାମ କରିପାରେ ନାହିଁ । ମାଙ୍କଡ଼ କିନ୍ତୁ ଦୁଇ ଗୋଡ଼ରେ ଚାଲିପାରେ ଓ ହାତରେ ଅନେକ କାମ କରିପାରେ । ଫଳ ଖାଇଲାବେଳେ ସେ ହାତରେ ଫଳ ଧରି ଯାଏ । ଫଳ ଧରି ଖାଏ । କିନ୍ତୁ ମାଙ୍କଡ଼ର ହାତ ଲମ୍ବା ଓ ଆଙ୍ଗୁଠି-ଗୁଡ଼ିକ ମଣିଷ ଆଙ୍ଗୁଠି ଠାରୁ ଶ୍ରେଷ୍ଠ । ଗଛର ଶାଖାକୁ ଧରିବା ପାଇଁ ମାଙ୍କଡ଼ ତାର ହାତ ଗୋଡ଼ ବ୍ୟବହାର କରେ ।



ମଣିଷହାତ    ଗରିଲାହାତ    ମଣିଷଗୋଡ଼    ଶିମ୍ପାଞ୍ଜି ଗୋଡ଼

ଗଛ ଉପରେ ଚଢ଼ି ସେଠି ସବୁବେଳେ ରହୁଥିବାରୁ ମାଙ୍କଡ଼ର ଗୋଡ଼ ଚାଲିବା କାମରେ ବେଶି ଲାଗେ ନାହିଁ । ତେଣୁ ମଣିଷର ଗୋଡ଼ ଅପେକ୍ଷା ମାଙ୍କଡ଼ର ଗୋଡ଼ ଆହୁରି ଅନୁନ୍ନତ । ମାଙ୍କଡ଼

କଚ୍ଛବାଠ ଗୋଡ଼ଦ୍ୱାରା ବୁଲି ଯାଇପାରେ କିନ୍ତୁ ଦୌଡ଼ିବା କାମଟି ମାଙ୍କଡ଼ ଦ୍ୱାରା ହୋଇପାରେ ନାହିଁ ।

ବର୍ତ୍ତମାନ ମାଙ୍କଡ଼ର ବୁଦ୍ଧି ଦେଖାଯାଉ । ଶିମ୍ପାଞ୍ଜି ନାମକ ମାଙ୍କଡ ସବୁଠାରୁ ବେଶୀ ବୁଦ୍ଧିଆ । ସେ ମଣିଷକୁ ଭଲଭାବେ ଅନୁକରଣ କରିପାରେ । ସେ ବନ୍ଦୀ ଥିବାବେଳେ ମଣିଷକୁ ଦେଖି ଦେଖି ନାନା ଜିନିଷ ଚିହ୍ନିବା, ଏକଠାରୁ ଦଶ ପର୍ଯ୍ୟନ୍ତ ଗଣି ପାରିବା, ଶିକୁଳି ଦ୍ୱାରା ବନ୍ଦ ଦ୍ୱାରକୁ ଖୋଲି ପାରିବା ଇତ୍ୟାଦି ଅନେକ କାମ କରିପାରେ । ଶିକ୍ଷିତ ଶିମ୍ପାଞ୍ଜିର କାର୍ଯ୍ୟକଳାପ ଦେଖି ମଣିଷ ଆଶ୍ଚର୍ଯ୍ୟ ହୋଇଯାଏ । ଏପରି କି ସିନେମାରେ ଖୁବ୍ ନିଖୁଣ ଭାବରେ ଶିମ୍ପାଞ୍ଜି ଅଭିନୟ କରି ପାରୁ ଥିବାର ଆମେ ଦେଖୁ ।



(ମାଙ୍କଡ଼ କଦଳୀ ଆଣିବା ପାଇଁ ଦୁଇଟି ବାଡ଼ିକୁ ଯୋଡ଼ୁଛି)

ଥରେ ଗୋଟିଏ ଶିମ୍ପାଞ୍ଜିକୁ ଗୋଟିଏ ବଡ ପିଞ୍ଜରା ଭିତରେ ରଖି, ପିଞ୍ଜରାର କିଛି ଦୂରରେ ଗୋଟିଏ କଦଳୀ ରଖି ଦିଆଗଲା । କଦଳୀକୁ ଦେଖି ତା ପାଟିରୁ ନାଳ ଗଡ଼ିବାର କଥା । କିନ୍ତୁ ବିଚରା

କରେ କଣ ? ଘୂରିଆଡ଼କୁ ଘୂରିଁ ସେ ଦେଖିଲେ ଯେ ପାଖରେ ଗୋଟାଏ ବାଉଁଶ ବାଡ଼ ଅଛି । ତାକୁ ହାତରେ ଧରି ସେ କଦଳୀ ଆଡ଼କୁ ବାଡ଼ଟା ବଢ଼ାଇଲେ, କିନ୍ତୁ ବାଡ଼ଟା ଛୋଟ ଥିବାରୁ ପାଇଲେ ନାହିଁ । ତା ପରେ ତା ପାଖରେ ଥିବା ଆଉ ଗୋଟାଏ ବାଡ଼କୁ ଯୋଡ଼ିବାଇ ତାକୁ ଅନ୍ୟ ବାଡ଼ ଭିତରେ ଭର୍ତ୍ତିକରି ସେ କଦଳୀ ଆଣି ଖାଇଲେ ।

ଆଉ ଗୋଟିଏ ଶିମ୍ପାଞ୍ଜିର ବୁଦ୍ଧିକି ପ୍ରକୃତରେ ପ୍ରଶଂସା କରିବାର କଥା । ମାଙ୍କଡ଼ଙ୍କ ବୁଦ୍ଧିକି ପରୀକ୍ଷା କରିବା ପାଇଁ ରୁଷିଆର ଜଣେ ବୈଜ୍ଞାନିକ ଗୋଟିଏ ମାଙ୍କଡ଼ ରଖିଥାନ୍ତି । ସେ ଥରେ ତାଙ୍କ ପୋଷା ମାଙ୍କଡ଼ର ବୁଦ୍ଧି ପରୀକ୍ଷା କରିବା ପାଇଁ ମଝିରେ ଫଳ ରଖି ତା ଚାରି ପାଖରେ ନିଆଁ ଜାଳଦେଲେ । କିନ୍ତୁ ମାଙ୍କଡ଼ କି ଡରିବା ଜନ୍ତୁ ? ସେ ବାଲଟିରେ ପାଣି ଆଣି ନିଆଁ ଲିଭାଇ ଦେଇ ଫଳଟିକୁ ଶେଷକୁ ନେଇଗଲେ ।

ସେହିପରି ଆଉ ଥରେ ଶିମ୍ପାଞ୍ଜିର ମୁଣ୍ଡ ଉପରେ ଗୋଟିଏ ଫଳ ସୂତାରେ ଝୁଲାଇ ଦିଆଗଲା । ପ୍ରଥମେ ପ୍ରଥମେ ସେ ଫଳଟାକୁ ଆଣିବା ପାଇଁ ବହୁତ ଡିଆଁ ଡେଇଁ କଲେ କିନ୍ତୁ ଫଳଟା ଖୁବ୍ ଉଚ୍ଚରେ ଝୁଲୁ ଥିବାରୁ ସେ ତାକୁ ଆଣି ପାରିଲେ ନାହିଁ । ତା ପରେ ସେ ଟିକିଏ କଣ ଭାବିଲେ ଓ ଗୋଟାକୁ ଗୋଟା ବାକ୍ସ ଆଣି ଥୋଇ ଗୋଟାଏ ଉଚ୍ଚ ଜାଗା ତିଆରି କଲେ । ତା ଉପରେ ଚଢ଼ି ଫଳକୁ ହାତ ବଢ଼ାଇଲେ । ତେବେ ବି ଫଳକୁ ତା ହାତ ନ ପାଇବାରୁ ସେ ଗୋଟାଏ ବାଡ଼ ଆଣି ଫଳଟାକୁ ତଳକୁ ଖସାଇ ଦେଇ ଖାଇଦେଲେ ।

ଏହିପରି ଅନେକରେ ପରୀକ୍ଷା କରାଯାଇ ଦେଖାଯାଇଛି ଯେ ମାଙ୍କଡ଼ ଓ ମଣିଷ ଭିତରେ ତଫାତ୍ ଖୁବ୍ କମ୍ । ପ୍ରକୃତରେ ମାଙ୍କଡ଼ର ନୂଆରୂପ ମଣିଷ ଓ ମଣିଷର ପୁରୁଣା ରୂପ ମାଙ୍କଡ଼ । ମାଙ୍କଡ଼ ଓ



(ତଳେ ଜିନିଷ ଥୋଇ ମାଙ୍କଡ଼ ତା ଉପରେ ଠିଆ ହୋଇ କାଡ଼ଦ୍ୱାର ଫଳକୁ ତଳକୁ ପକେଇବାକୁ ଚେଷ୍ଟା କରୁଛି )

ମଣିଷର ରକ୍ତକୁ ପରୀକ୍ଷା କରାଯାଇ ଦେଖା ଯାଇଛି ଯେ ଦୁହିଁଙ୍କ ରକ୍ତ ପ୍ରାୟ ଏକାପରି । ବୈଜ୍ଞାନିକମାନେ ରକ୍ତରୁ ମଧ୍ୟ ପ୍ରାଣୀମାନଙ୍କ ଭିତରେ ଥିବା ତଫାତ୍‌ଟା ଜାଣି ପାରନ୍ତି । ଉଦାହରଣ ସ୍ୱରୂପ ଉଚ୍ଚ ଜାତିର ପ୍ରାଣୀର ରକ୍ତ ଅନ୍ୟପ୍ରାଣୀ ଦେହରେ ଭରି ଦେଲେ ଅନ୍ୟ

ପ୍ରାଣୀଟି ମରିଯାଏ । ମଣିଷର ରକ୍ତ ଗାଈ ଘୋଡ଼ାଙ୍କୁ ବିଷ । କିନ୍ତୁ ମାଙ୍କଡ଼ ଓ ମଣିଷ—ଏ ଦୁହିଁଙ୍କ ରକ୍ତ ପ୍ରାୟ ଏକା । ଏପରି କି ମଣିଷଙ୍କୁ ହେଉଥିବା ଅନେକ ତୁଆଁ ରୋଗ ମାଙ୍କଡ଼ଙ୍କୁ ମଧ୍ୟ ହୁଏ ।

ଏହିସବୁ କାରଣରୁ ମଣିଷ ଯେ ପୂର୍ବେ ମାଙ୍କଡ଼ ଥିଲା ଓ ତା ପରେ ଗଛରୁ ଓହ୍ଲାଇ ତଳେ ବୁଲାଚଲା କରୁକରୁ ତା ଗୋଡ଼ ଶକ୍ତ ହୋଇ ଧୀରେ ଧୀରେ ସେ ବଣ ମଣିଷ ହେଲା ଓ ଶେଷରେ ବଣ ମଣିଷରୁ ଉନ୍ନତି କରି କରି ଗୃହ ବାସ, ଘରଦ୍ୱାର କରୁଥିବା ମଣିଷରେ ସେ ଯେ ପରିଣତ ହେଲା ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ବୋଲି ବୈଜ୍ଞାନିକମାନେ କହନ୍ତି ।

କିନ୍ତୁ ଏ ସବୁ ଶହେ ଦୁଇଶହ କିମ୍ବା ହଜାର, ବି ହଜାର ବର୍ଷରେ ହୋଇ ନାହିଁ । ପୃଥିବୀ ଧୀରେ ଧୀରେ ଆଗେଇ ଚାଲିଚି । ଲକ୍ଷ ଲକ୍ଷ ବର୍ଷ କିମ୍ବା କୋଟି କୋଟି ବର୍ଷ ପରେ ମାଙ୍କଡ଼ ହୋଇଚି ମଣିଷ । ଏଇ ମଣିଷ ଆଜି ମଧ୍ୟ ବୁଦ୍ଧି, ବିବେକ ଖର୍ଚ୍ଚ କରି ଆଜି ମଧ୍ୟ ଆଗେଇ ଚାଲିଚି ।

---

## ମାଙ୍କଡ଼ କିମିତି ମଣିଷ ହେଲା

ମଣିଷ ଓ ମାଙ୍କଡ଼ ଭିତରେ ଅନେକ ସମାନତା ଅଛି— ଏ କଥା ସତ । କିନ୍ତୁ ମାଙ୍କଡ଼ କିମିତି ମଣିଷ ହୋଇଗଲା ?

ମାଙ୍କଡ଼ ଗଛ ଉପରେ ରହେ । ମଣିଷ ଭୂଇଁରେ ଘର କରି ରହେ । ମାଙ୍କଡ଼ କାମଦାମ କରିପାରେ ନାହିଁ । ମଣିଷ ଗୃହବାସଠାରୁ କାରିଗରୀ ପର୍ଯ୍ୟନ୍ତ ସବୁ କରିପାରେ । ମାଙ୍କଡ଼ କଥା କହିପାରେ ନାହିଁ—ମଣିଷ କଥାବାର୍ତ୍ତା କରିପାରେ । ଏତେ ଫରକ ଥିବା ଠିଁ ମାଙ୍କଡ଼ରୁ ଯେ ମଣିଷ ଜନ୍ମନେଲା—ଏକଥା ବଡ଼ ଅସମ୍ଭବ ଲାଗେ ।

ଅସମ୍ଭବ ଲାଗିଲେ ମଧ୍ୟ କଥାଟା ଯେ ସତ ପଣ୍ଡିତମାନେ ତାହା ପ୍ରମାଣ କରି ଦେଖାଇ ଦେଇଛନ୍ତି । ବାଘର ଖୋଜ ଦେଖି ଦେଖି ଆମେ ଯେମିତି ବାଘ କେଉଁଆଡେ ଯାଇଚି ସେକଥା ଠିକ୍ ଠିକ୍ ଜାଣିପାରୁ ସେହିପରି ମାଟି ଭିତରୁ ମିଳୁଥିବା କଙ୍କାଳକୁ ଦେଖି ଦେଖି ପଣ୍ଡିତମାନେ ମାଙ୍କଡ଼ କେଉଁବାଟେ ମଣିଷ ହୋଇଚି ସେ କଥା ଠିକ୍ ଠିକ୍ କହି ଦେଉଛନ୍ତି ।

ପ୍ରାୟ ଦେଢ଼ କୋଟି ବର୍ଷତଳେ ଦୁନିଆରେ ମଣିଷ ନଥିଲେ— ଥିଲେ ଖାଲି ମାଙ୍କଡ଼ । ସେମାନେ ଗଛ ଉପରେ ରହୁଥିଲେ—ଫଳ ଖାଉଥିଲେ । ସେମାନଙ୍କ ଗୋଡ ଓ ହାତରେ ଆଙ୍ଗୁଠି ଥିଲା । ଗଛ ଉପରେ ରହିବାରୁ ଓ ସମୟ ସମୟରେ ସିଧାହୋଇ ବସି ପାରୁଥିବାରୁ ସେମାନଙ୍କ ହାତ ମଣିଷ ହାତପରି ଫଳ ମୂଳ ଧରି ଖାଇବା, ଡାଳକୁ ଧରି ଝୁଲିବା ପ୍ରଭୃତି କାମରେ ଲାଗୁଥିଲା ।

କିନ୍ତୁ ଧୀରେ ଧୀରେ ଦୁନିଆ ବଦଳିଲା । ଗଛପତ୍ର କମ୍ ହୋଇ ଆସିଲା । ଫଳ ମଧ୍ୟ ସବୁ ଋତୁରେ ମିଳିଲା ନାହିଁ । ମାଙ୍କଡ଼ ଖାଇବାକୁ ପାଇଲା ନାହିଁ । ଭୂଇଁତଳେ କିନ୍ତୁ କନ୍ଦମୂଳ ପ୍ରଭୃତି ନାନା ଜିନିଷ ଥିଲା । ସେଠୁ ମାଙ୍କଡ଼ ବାଧ୍ୟହୋଇ ଗଛ ଉପରୁ ତଳକୁ ଓହ୍ଲାଇଲା ପେଟର ଦାଉରେ ।

ତଳକୁ ଓହ୍ଲାଇ ସେ ଦେଖିଲା ଯେ ପଶୁଙ୍କ ପରି ଚାରି ଗୋଡରେ ଚାଲିଲେ ସେ ଫଳ ମୂଳ ଗୋଟାଇ ପାରିବ ନାହିଁ । ତେଣୁ ଧୀରେ ଧୀରେ ସେ ଦୁଇ ପାଦରେ ଚାଲି ହାତରେ କାମ କରିବାକୁ ଚେଷ୍ଟା କଲା । ଲକ୍ଷ ଲକ୍ଷ ବର୍ଷ ଏହିପରି ବିତିଗଲା । ଲକ୍ଷ ଲକ୍ଷ ମାଙ୍କଡ ଜନ୍ମ ହୋଇ ମଲେ । କିନ୍ତୁ ସେ ଦୁଇ ଗୋଡ଼ରେ ଚାଲି, ଦୁଇ ହାତକୁ କାମ କରିବାରେ ଲଗାଇଲା ।

ବଣମଣିଷର କାମ କରି ପାରିବାର ଶକ୍ତି ହୋଇଗଲା—କାରଣ ସେ ତାର ହାତରେ ଯେ କୌଣସି ଜିନିଷ ଧରି ପାରୁଥିଲା ।

ଆମେ ଅନେକ ପଶୁପକ୍ଷୀ ଦେଖୁ । ସେମାନେ ବି ଗୋଟିଏ ଅଧିକେ କାମ କରି ପାରନ୍ତି । ବୁଢ଼ିଆଣୀ ଜାଲ ବୁଣିପାରେ—ଖୁବ୍ ସୁନ୍ଦର ଜାଲ । ବାୟା ଚଢ଼େଇ ସୁନ୍ଦର ବସା ତିଆରି କରିପାରେ । ମହୁମାଛି ମହୁଫେଣା ତିଆରି କରେ । କିନ୍ତୁ ଏମାନଙ୍କର କେବଳ ଗୋଟିଏ ମାତ୍ର କାମ କରିବାର ଶକ୍ତି ଅଛି । ବୁଢ଼ିଆଣୀ କେବଳ ଜାଲ ବୁଣିପାରେ ! ସେତିକରେ ତାର କାମ ଶେଷ । ବାୟାଚଢ଼େଇ କେବଳ ବସା ତିଆରି କରିପାରେ । ମହୁମାଛି ଖାଲି ମହୁଫେଣା କରେ । ନୂଆକାମ କରିବାର ଶକ୍ତି ଏମାନଙ୍କର ନାହିଁ ।

କିନ୍ତୁ ବଣମଣିଷ ଭୂଇଁରେ ଖାଦ୍ୟ ଖୋଜୁ ଖୋଜୁ ତାକୁ ଅନେକ କଥା କରିବାକୁ ପଡ଼ିଲା । ଭୂଇଁରେ ବାଘ ସାପ ପ୍ରଭୃତି ଛଡ଼ା ସେତେବେଳେ ଅନେକ ଭୟଙ୍କର ଜୀବ ରହୁଥିଲେ । ସେମାନଙ୍କ ହାବୁଡ଼ରେ ପଡ଼ି ବଣମଣିଷ ସମୟ ସମୟରେ ବଡ଼ ବିପଦରେ ପଡ଼ିଲା । କେତେ ବଣ ମଣିଷ ମଧ୍ୟ ମଲେ । କିନ୍ତୁ ଯେଉଁ ରହିଗଲେ ସେମାନେ ଅବସ୍ଥାକୁ ଦେଖି ବ୍ୟବସ୍ଥା କରିବାକୁ ଲାଗିଲେ ।

ଶତ୍ରୁମାନଙ୍କ ସହିତ ଯୁଦ୍ଧ କରିବା ପାଇଁ ବଣ ମଣିଷର ବଡ଼ ବଡ଼ ଦାନ୍ତ କମ୍ବା ମୁନିଆଁ ନଖ ନ ଥିଲା । ତେଣୁ ସେ ବାଧ୍ୟହୋଇ ଟେକା ପଥର ଓ ବାଡ଼ିର ସାହାଯ୍ୟ ନେଲା । ତା ପରେ ସେ ପଥରରେ ମୁନିଆଁ ମୁନିଆଁ ଅସ୍ତ୍ର ଶସ୍ତ୍ର ସବୁ ତିଆରି କଲା ।

ସେଇ ସବୁ ଅସ୍ତ୍ର ଶସ୍ତ୍ର ଓ ବଣ ମଣିଷର କଙ୍କାଳ ଆଜିକାଲି ଅନେକ ଜାଗାରୁ ମିଳୁଛି । ପୁଣି ଲକ୍ଷ ଲକ୍ଷ ବର୍ଷ ବିତିଗଲା । ବଣ

ମଣିଷ ମଧ୍ୟ ଏହା ଭିତରେ ଅନେକ ବଦଳିଗଲା । ସେ ମୁନିଆ ପଥୁରିଆ ଅସ୍ତ୍ର ସାହାଯ୍ୟରେ ଶ୍ରେଷ୍ଠବଡ଼ ଅନେକ ଜୀବଜନ୍ତୁ ମାରି ଖାଇଲା ।



ପୂର୍ବକାଳର ମଣିଷର ପଥରର ଅସ୍ତ୍ରଶସ୍ତ୍ର

ତା ପରେ ସେ ଦେଖିଲା ଯେ ନିଆଁ ଗୋଟାଏ ବଡ଼ ଉପକାରୀ ଜିନିଷ । ନିଆଁକୁ ବାଘ ସାପ ସମସ୍ତଙ୍କର ଡର । ତେଣୁ ସେ ନିଆଁର ବ୍ୟବହାର କରି ଜାଣିଲା । ପଥର ବଦଳରେ ପଥର ଘଷି ନିଆଁ ବାହାର କରି ତାକୁ କାର୍ଯ୍ୟରେ ଲଗାଇଲା । କଞ୍ଚା ମାଂସ ଛାଡ଼ି ଉଷୁମ ପୋଡ଼ା ମାଂସ ଖାଇଲା ।

ଏହିପରି ଭାବରେ ତାର ବୁଦ୍ଧି ମଧ୍ୟ ଦିନକୁ ଦିନ ବଢ଼ିଲା । ଶୀତ ଓ ଖରାରୁ ରକ୍ଷା ପାଇବା ପାଇଁ ସେ କୁଡ଼ିଆ କରି ରହିଲା । ପଶୁପକ୍ଷୀଙ୍କୁ ଶିକାର କରିବାପାଇଁ ଧନୁଶର ତିଆରି କଲା । ଯଥେଷ୍ଟ ଫଳମୂଳ ନ ମିଳିବାରୁ ସେ ବନଜଙ୍ଗଲ ବୁଲି ଶିକାର କରି କୌଣସି-ମତେ ବଞ୍ଚି ରହିଲା ।

କିନ୍ତୁ ସବୁବେଳେ ଶିକାର ମିଳିବା ମଧ୍ୟ କଷ୍ଟକର ହେଲା । ସେଥିପାଇଁ ତାକୁ ଘୋର ପରିଶ୍ରମ କରିବାକୁ ପଡ଼ୁଥିଲା । ଜନ୍ତୁଟାଏ ଦେଖିଲେ ତା ପଛେ ପଛେ ଦଉଡ଼ି ଦଉଡ଼ି ତାକୁ ମାରିବାକୁ ପଡ଼ୁଥିଲା । ସମସ୍ତ ସମୟରେ ଜନ୍ତୁ ମଧ୍ୟ ପଳାଇ ଯାଉଥିଲା । ଏହି ସବୁ କାରଣରୁ ସେ ଜଙ୍ଗଲରୁ ନାନା ଜନ୍ତୁ ଧରି ସେମାନଙ୍କୁ ପାଳିଲା । ସେମାନଙ୍କୁ ମାରି ମାଂସ ଖାଇବାକୁ ସୁବିଧା ହେଲା । ସେମାନଙ୍କଠାରୁ ଦୁଧ ମଧ୍ୟ ମିଳିଲା । ଶୀତରୁ ରକ୍ଷା ପାଇବାପାଇଁ ସେମାନଙ୍କ ଚମଡ଼ା ମଧ୍ୟ ସେ ଲୁଗାପରି ବ୍ୟବହାର କଲା ।

ଶେଷକୁ ସେ କୃଷିକର୍ମ ଶିଖିଲା । ପାଣିରେ ଯିବା ଆସିବା କରିବାପାଇଁ ନାଆ ତିଆରି କଲା । ଯେତେବେଳେ ଯାହା ଦରକାର ହେଲା ତାହା କରିନେବାକୁ ତାକୁ ବିଶେଷ ଅସୁବିଧା ହେଲା ନାହିଁ କାରଣ ତାର କାମ କରିବାର ଶକ୍ତି ଖୁବ୍ ବଢ଼ି ଯାଇଥିଲା । ଅନ୍ୟ ପଶୁପକ୍ଷୀଙ୍କ ଅପେକ୍ଷା ତାର ବୁଦ୍ଧି ମଧ୍ୟ ବଢ଼ି ଯାଇଥିଲା ।

ଏହିପରି ଅବସ୍ଥାରେ ରହିଥିବା ବେଳେ ମଣିଷ ଦେଖିଲା ଯେ ଜଣେ ମଣିଷ ଅପେକ୍ଷା ଏକାଠି ମିଳିମିଶି ଅନେକ ମଣିଷ କାମକରିବା ଅଧିକ ସୁବିଧାଜନକ । ବଡ଼ ବଡ଼ ଜନ୍ତୁକୁ ଶିକାର କରିବା ଜଣକ ପକ୍ଷରେ ଅସମ୍ଭବ ହେଉଥିଲା । କେଣୁ ଅନେକ ମଣିଷ ମିଶି ଶିକାର କଲେ । କୃଷିବାସ କଲେ । ମଣିଷ ସମାଜର ମୂଳଦୁଆ ପଡ଼ିଲା । ସମସ୍ତେ ମିଳିମିଶି ରହିଲେ—ବିପଦ ଆପଦ ବେଳେ ସମସ୍ତେ ମିଳିମିଶି କାମ କଲେ, ମଣିଷର ସାହସ ବଢ଼ିଗଲା ।

ଶେଷକୁ ପରସ୍ପର ମଧ୍ୟରେ ବୁଝାମଣାପାଇଁ ସେମାନେ ଠାରଠୁରି ଦ୍ୱାରା ନିଜ ମନର ଭାବ ପ୍ରକାଶ କଲେ । ଧୀରେ ଧୀରେ ଭାଷା ସୃଷ୍ଟି ହେଲା । ଭାଷା ଗଢ଼ିଉଠିବା ପରେ ମଣିଷ ପଶୁପକ୍ଷୀଙ୍କ ଅପେକ୍ଷା ଆହୁରି ଅନେକ ଉଚ୍ଚକୁ ଉଠିଗଲା ।

ଏହିପରି ଭାବରେ ମାଙ୍କଡ଼ ଜାତି କାଳକ୍ରମେ ମଣିଷ ଜାତିରେ ପରିଣତ ହେଲା । କିନ୍ତୁ ଯେଉଁ ମାଙ୍କଡ଼ମାନେ ନୂଆ ଅବସ୍ଥାରେ



( ପୂର୍ବକାଳର ମଣିଷ ମିଳିମିଶି ବଣୁଆହାତୀକୁ ମାରୁଛନ୍ତି )

ପଡ଼ି ନିଜକୁ ବଦଳାଇ ପାରିଲେ ନାହିଁ ସେମାନେ ମାଙ୍କଡ଼ ହୋଇ ରହିଲେ । ଆମ ମଣିଷ ସମାଜରେ କିଏ ବଡ଼ଲୋକ ହେଉଛି— କିଏ କୋଠା ତୋଳୁଛି—କିଏ ବ୍ୟୋମଯାନ ତିଆରି କରୁଛି । କିନ୍ତୁ କେତେକେ ନିଜ ଅବସ୍ଥାରୁ ଉପରକୁ ଉଠି ନ ପାରି ଜୀବନଯାକ ଯୋଉଠି ସେଇଠି ରହି ଯାଉଛନ୍ତି ।

ପୂର୍ବକାଳରେ ଯେଉଁ କଥା ଠିକ୍ ଥିଲା ବର୍ତ୍ତମାନ ବି ସେଇଟା ଠିକ୍ । ଆମ ଆଖି ଆଗରେ ଆମେ ଦେଖୁଛୁ—ଅନ୍ୟ ଦେଶର ଲୋକେ କଳ କାରଖାନା କରି, ଉନ୍ନତ ଧରଣର ଯନ୍ତ୍ରପାତି ସାହାଯ୍ୟରେ ଗୃହବାସ କରି ଧନ ଓ ମାନର ଅଧିକାରୀ ହୋଇ ରହିଛନ୍ତି । ଆମେ ସବୁ କିନ୍ତୁ ପୁରୁଣା କଥା, ପୁରୁଣା ରୀତିନୀତି, ପୁରାତନ ଆଇନ କାନୁନକୁ ଧରି ଝୁଲିଛୁ । ପଚାରିଲେ କହୁଛୁ— ପୂର୍ବେ ଯାହା ଥିଲା ଆଜି କଣ କେବେ ସେପରି ହେବ ? କିନ୍ତୁ ପୂର୍ବେ ଯେ ଆମେ ମାଙ୍କଡ଼ ଥିଲୁ ତାହା ଆଜ ପରିଷ୍କାର ଜଣାଗଲାଣି ।

ଦୁନିଆ ବଦଳୁଚି । ମଣିଷ ଆଗେଇ ଚାଲିଚି । ମଣିଷ ଦୁନିଆକୁ ଘଡ଼ି ଘଡ଼ିକେ ବଦଳେଇ ଚାଲିଚି । ମଣିଷ କେମିତି ଏତେବଡ଼ କାମ କରିପାରୁଛି ? ଟିକଏ ଭାବିଲେ ଜଣାଯିବ ଯେ ସବୁ ଉନ୍ନତିର ମୂଳ ହେଉଚି—ପରିଶ୍ରମ । ପୁଣି ପରିଶ୍ରମକୁ ଆହୁରି ସଫଳ କରେ ବୁଦ୍ଧି ।

ସବାଶେଷରେ ଶିକ୍ଷା ଦ୍ୱାରା ମଣିଷର ବୁଦ୍ଧି ଶତଗୁଣରେ ବଢ଼ିଯାଏ ଓ ମଣିଷ ଅସମ୍ଭବକୁ ସମ୍ଭବ କରିବା ପାଇଁ କ୍ଷମତାଶାଳୀ ହୋଇ ଉଠେ ।

——

## ମାଙ୍କଡ଼ରୁ ମଣିଷ ହେବାର ପ୍ରମାଣ

ମାଙ୍କଡ଼ରୁ ବଣମଣିଷ ଓ ବଣମଣିଷରୁ ଆଜିକାଲିକାର ମଣିଷ ଜନ୍ମ ହୋଇଛି—ଏ କଥାଟା ଭାରି ଅଡୁଆ ଲାଗେ । ଇଂରେଜ ପଣ୍ଡିତ ଡାରଉଇନ ଯେତେବେଳେ ଏଇକଥା କହିଲେ ସମସ୍ତେ ତାଙ୍କୁ ଉପହାସ କଲେ । କହିଲେ—ଲୋକଟା ପାଗଳ ।

କିନ୍ତୁ ସବୁ ବଡ଼ ବଡ଼ ଲୋକ ଉଣା ଅଧିକେ ପାଗଳ । ସେମାନଙ୍କ କଥା ସହଜରେ ବୁଝିହୁଏ ନାହିଁ । ତେଣୁ ଲୋକେ ସେମାନଙ୍କୁ ପାଗଳ ବୋଲି ଭାବିଥାନ୍ତି ।

ଯିଶୁଖ୍ରୀଷ୍ଟ ଯେତେବେଳେ କହିଲେ ଯେ ମଣିଷର ସମସ୍ତଙ୍କୁ ଭଲପାଇବା ଉଚିତ ଓ ଦୟାକ୍ଷମା ଇତ୍ୟାଦି ଗୁଣରେ ଭୂଷିତ ହୋଇ ମଣିଷର ପବିତ୍ର ଜୀବନ ଯାପନ କରିବା ଉଚିତ— ସେତେବେଳେ ବର୍ବର ଲୋକେ ତାଙ୍କୁ କ୍ରୁଶକାଠରେ ଚଢ଼ାଇ ତାଙ୍କ ଗୋଡ଼, ହାତ, ଛାତି ଚିରିଆଡ଼େ କଣ୍ଟାପିଟି ତାଙ୍କୁ ମାରି ପକାଇଲେ । ସକ୍ରେଟିସ୍ ନାମରେ ଜଣେ ବଡ଼ ପଣ୍ଡିତ ସେହିପରି ବିଷ ପିଇ ମଲେ ।

ଡାରଉଇନ ତ କହିଦେଲେ ଯେ ମଣିଷ ମାଙ୍କଡ଼ରୁ ନଜକୁ ନଜେ ଅବସ୍ଥା ଚକ୍ରରେ ପଡ଼ି ଗଢ଼ିଛି । କିନ୍ତୁ ସେତେବେଳେ ମାଙ୍କଡ଼ରୁ ମଣିଷ ହେବାର ଯଥେଷ୍ଟ ପ୍ରମାଣ ମିଳି ନ ଥିଲା । ଧୀରେ ଧୀରେ ପଣ୍ଡିତମାନେ ସେ ଦିଗରେ ଆଲୋଚନା ଚଳାଇଲେ । ମାଟି ଭିତରୁ ଖୋଳି ନାନାକଥା ବାହାର କଲେ । ମାଙ୍କଡ଼ ଓ ମଣିଷର ମଝି ମଝିକିଆ ଅବସ୍ଥାର ବଣମଣିଷମାନଙ୍କର କଙ୍କାଳ ମିଳିଲା । ସେଇଥିରୁ ସବୁକଥା ଜଣା ପଡ଼ିଲା ।

ଆଜକୁ ଆଠ ନଅଲକ୍ଷ ବର୍ଷତଳେ ରହୁଥିବା ମଣିଷର ଗୋଟିଏ କଙ୍କାଳ ହଠାତ୍ ଜାଭା ଦ୍ୱୀପରେ ମିଳିଲା । ଦୁବୋଆ ନାମକ ଜଣେ ପଣ୍ଡିତ ତାକୁ ଖୋଳି ବାହାର କଲେ । ହାଡ଼ର ପରୀକ୍ଷାରୁ ସେ ଲୋକ କେବେ ପୃଥିବୀରେ ବାସ କରୁଥିଲା ତାହା ଜଣା ପଡ଼ିଲା । ଆଉ ସବୁ ଅଙ୍ଗ-ପ୍ରତ୍ୟଙ୍ଗ ଯୋଡ଼ିଦେବାରୁ ସେ ଲୋକର ପୂର୍ବ ଆକୃତି କିମିତି ଥିଲା ତା ମଧ୍ୟ ଜଣାଗଲା ।


ଜାଭାର ପୁରାତନ ମାନବ

ସେ ଲୋକର ହାଡ଼ର ଗଠନ ଦେଖି ପଣ୍ଡିତମାନେ କହିଲେ ଯେ ତା ମୁଣ୍ଡରେ ଥିବା ମସ୍ତିଷ୍କ ମଣିଷର ମସ୍ତିଷ୍କଠାରୁ କମ୍ ଥିଲା ଓ ମାଙ୍କଡ଼ର ମସ୍ତିଷ୍କଠାରୁ ବେଶି ଥିଲା । ସେ ଦୁଇଗୋଡ଼ରେ ଚାଲି ପାରୁଥିଲା—କଥା କହି ପାରୁଥିଲା । ତାର ନାକ ଥିଲା ଚେପ୍ଟା । ତା ଦେହର ଗଠନ ଥିଲା ଖୁବ୍ ମଜବୁତ୍ ।

ଏହା ପରେ ପରେ ଚୀନର ପେକିଙ୍ଗ ସହରରେ ଆଉ ଗୋଟିଏ କଙ୍କାଳ ମିଳିଲା । ତାର ହାଡ଼ ବ ପରୀକ୍ଷା କରିବାରୁ ଜଣାଗଲା ଯେ ସେ ଛଅଲକ୍ଷ ବର୍ଷତଳେ ପୃଥିବୀରେ ରହୁଥିଲା । ତାର ଶରୀରର ଗଠନ କେତେକ ପରିମାଣରେ ଉପରେ କୁହାଯାଇଥିବା ବଣ-ମଣିଷର ଶରୀରର ଗଠନ ସହିତ ସମାନ ଥିଲା । କିନ୍ତୁ ତାର ମସ୍ତିଷ୍କ ଆହୁରି ଉନ୍ନତ ଥିଲା । କିନ୍ତୁ ତାର ପାଟି ମାଙ୍କଡ଼ ପରି ଆଗକୁ ବାହାରି ଥିଲା ।

ଏହି ମଣିଷ ସାଥିରେ ଥିବା ଅନେକ ହତିଆର ମଧ୍ୟ ମିଳିଥିଲା । ସେଗୁଡ଼ିକ ସବୁ ପଥରରେ ତିଆରି ହୋଇଥିଲା । ଏହି ପଥରରେ ତିଆରି ହତିଆର ସହିତ ପାଉଁଶ ଓ ଅନ୍ୟ ପଶୁର ହାଡ଼ ମଧ୍ୟ ମିଳିଥିଲା । ତେଣୁ ପଣ୍ଡିତମାନେ ସ୍ଥିର କଲେ ଯେ ସେହିକର ଲୋକେ ପଥରରେ ହତିଆର ତିଆରି କରୁଥିଲେ—ନିଆଁ ର ବ୍ୟବହାର ଜାଣିଥିଲେ ଓ ପଶୁମାନଙ୍କୁ ମାରି ସେମାନଙ୍କର ମାଂସ ପୋଡ଼ି ଖାଉଥିଲେ ।

ତା ପରେ ଜର୍ମାନୀରେ ଆଉ ଏକ ପ୍ରକାର ପ୍ରାଚୀନ ମଣିଷର କଙ୍କାଳ ମିଳିଲା । ଏହାର ମସ୍ତିଷ୍କ ଆହୁରି ଉନ୍ନତ ଥିଲା । ଏମାନେ ଆହୁରି ଭଲ ଭଲ ହତିଆର ତିଆରି କରି ପାରୁଥିଲେ । ନିଆଁ ର ବ୍ୟବହାର ଜାଣିଥିଲେ ଓ ଦଳବାନ୍ଧି



(ଚୀନର ପୁରାତନ ମାନବ)

ବଡ଼ ବଡ଼ ପଶୁମାନଙ୍କୁ ଶୀକାର କରି ପାରୁଥିଲେ । ଏଭଳି ଲୋକମାନଙ୍କର କଙ୍କାଳ ଆହୁରି ଅନେକ ଦେଶରେ ମଧ୍ୟ ମିଳିଲା । ସେଥିରୁ ଜଣାଗଲା ଯେ ଏମାନେ ନାନା ଦେଶରେ ବାସ କରୁଥିଲେ । ଏମାନେ ଅଗ୍ନିର ଭଳି ମାଂସ ଖାଉଥିଲେ । ପଥରରେ ତିଆରି କୁରାଢ଼ି ବା ଖଣ୍ଡା ସାହାଯ୍ୟରେ ଯୁଦ୍ଧ କରୁଥିଲେ । ଏମାନଙ୍କର ସ୍ୱଭାବ ଖୁବ୍ ହିଂସ୍ର ଥିଲା ।



(ଫ୍ରାନସ୍‌ର ପ୍ରାଚୀନ ମାନବ)

ସବାଶେଷକୁ ଫ୍ରାନ୍‌ସର ଗୋଟିଏ ଗାରେ ଆହୁରି ଏକପ୍ରକାରର କଙ୍କାଳ ମିଳିଲା । ହାଡ଼କୁ ପରୀକ୍ଷା କରି ଦେଖିବାରୁ ଜଣାଗଲା ଯେ ସେଭଳି ଲୋକେ ପୃଥିବୀରେ ଲକ୍ଷେ ବର୍ଷ ତଳେ ରହୁଥିଲେ ଏମାନଙ୍କୁ ଭଲ ଭଲ ଅସ୍ତ୍ର ଶସ୍ତ୍ର ତିଆରି କରିବା ଜଣାଥିଲା । ଏମାନେ ଏମାନଙ୍କ ପୂର୍ବେ ରହୁଥିବା ମଣିଷଙ୍କଠାରୁ ଆହୁରି ଉନ୍ନତ ଥିଲେ ।

ମାଟିରୁ ମିଳିଥିବା ମଣିଷ ମୁଣ୍ଡକୁ ତୁଳନା କରି ପଣ୍ଡିତମାନେ ନାନା କଥା କହନ୍ତି । ମୁହଁର ଗଠନ କପରି ମାଙ୍କଡ଼ଠାରୁ

ଆରମ୍ଭ କରି ମଣିଷ ବର୍ତ୍ତମାନ ଅବସ୍ଥାକୁ ଆସିଛି, ତାର ମଧ୍ୟ ପ୍ରମାଣ ମିଳେ । ମାଙ୍କଡ଼ର ମୁହଁ ଆଗଆଡ଼କୁ ବେଶୀ ବାହାରି ଥାଏ । ତା ପରେ ବଣମଣିଷର ମୁହଁ ମାଙ୍କଡ଼ ମୁହଁ ଅପେକ୍ଷା ଆହୁରି କମ୍ ଆଗକୁ ବାହାରିଥାଏ । ଧୀରେ ଧୀରେ କମି କମି ବର୍ତ୍ତମାନ ମଣିଷର ମୁହଁ ସମାନ ହୋଇ ଯିବାରୁ କପାଳ ଓ ଓଠ ଏକ ସରଳ ରେଖାରେ ରହିଛି ।



(ମଣିଷର ପାଟିପାଖ କାଳକ୍ରମେ ସମାନ ହୋଇ ଆସିଛି)

ଆଜକାଲି ମଧ୍ୟ ପୂର୍ବକାଳର ଲୋକେ ଗୁଣାଅଧିକେ ସେହିପରି ଅବସ୍ଥାରେ ଦେଖାଯାନ୍ତି । ଆଫ୍ରିକା, ଅଷ୍ଟ୍ରେଲିଆ, ଦକ୍ଷିଣଆମେରିକା ଓ ବୋର୍ଣ୍ଣିଓ ଦ୍ୱୀପରେ ରହୁଥିବା ଅନାର୍ଯ୍ୟ ଲୋକେ ଆଜି ବି ପୂର୍ବଭଳି ଶୀକାର କରି, ମାଂସ ଖାଇ ଅନୁନ୍ନତ ଅବସ୍ଥାରେ ଜୀବନ ଯାପନ କରନ୍ତି । ଆମ ଓଡ଼ିଶାରେ ଜଙ୍ଗଲରେ ରହୁଥିବା ଆଦିବାସୀମାନେ ଗୁଣାଅଧିକେ ସେହି ଅବସ୍ଥାରେ ଅଛନ୍ତି । କିନ୍ତୁ ଅନ୍ୟମାନଙ୍କଠାରୁ ଦେଖି, ଶିଖି ସେମାନେ ବି ସଭ୍ୟ ହୋଇଗଲେଣି ।

—୦—

# ନୂଆ ଦୁନିଆଁ ର ଗତି

ଦିନ ଥିଲା ଯେତେବେଳେ ଲୋକେ ପୁରାଣର କଥାକୁ ବେଦବାକ୍ୟ ପରି ମାନୁଥିଲେ । ସେତେବେଳେ ଲୋକେ ପ୍ରକୃତି ସମ୍ବନ୍ଧରେ ଅନେକ କଥା ଜାଣି ନ ଥିଲେ । ଗାଁରେ ଯଦି ହଇଜା କିମ୍ବା ବସନ୍ତ ଲାଗୁଥିଲା ଲୋକେ ଭୟରେ ଢାଉଁ ଦେବତାଙ୍କ ପାଖରେ ଭୋଗ ଲଗାଉ ଥିଲେ କିମ୍ବା ବଳି ପକାଉଥିଲେ । ଆଜିର କଥା କିନ୍ତୁ ଅଲଗା । ଟିକା ନେଇ ଆମେ ବସନ୍ତରୁ ରକ୍ଷା ପାଉଛୁ । ସେହିପରି ଉଚିତ ବ୍ୟବସ୍ଥା ହେବାରୁ ଆଗେ ପୁରୀ ରଥ ଯାତ୍ରାରେ ଯେପରି ହଜାର ହଜାର ଲୋକ ହଇଜାରେ ମରୁଥିଲେ ଆଜି ଆଉ ସେପରି ହେଉନାହିଁ ।

ଖାଲି ସେତିକି ନୁହେଁ, ପୂର୍ବେ ଲୋକଙ୍କ ଜୀବନ ମଧ୍ୟ ଖୁବ୍ ସରଳ ଓ ସହଜ ଥିଲା । କୃଷି ବାସ କରି କୌଣସିମତେ ଖାଇପିଇ ଚଳିଯିବାଟା ହିଁ ଥିଲା ବଡ଼ କଥା । ଦୁଃଖ ଆସିଲେ, ବିପଦ ଆସିଲେ ଲୋକେ ଭାଗ୍ୟକୁ ଆଦରି ସବୁ ସହି ଯାଉଥିଲେ—କାରଣ ସେତେବେଳେ ଏହାଛଡ଼ା ଅନ୍ୟ କିଛି ଉପାୟ ନଥିଲା । କିନ୍ତୁ ଆଜି-କାଲିର ଦୁନିଆଁରେ ଏସବୁ ଆଉ ଚଳୁ ନାହିଁ ।

ବିଜ୍ଞାନର ଉନ୍ନତି ସଙ୍ଗେ ସଙ୍ଗେ ଲୋକର ଜୀବନ ମଧ୍ୟ ଖୁବ୍ ଜଟିଳ ହୋଇ ପଡ଼ୁଛି । ଗାଡ଼ି, ଉଡ଼ାଜାହାଜ, ମଟର ଯୋଗୁ ଲୋକ ହଜାର ହଜାର ମାଇଲ ଅଳ୍ପ ସମୟରେ ବୁଲିଯାଇ ପାରୁଛି, କଳ କାରଖାନା କରି ଅଳ୍ପକେ ବହୁତ ଜିନିଷ ତିଆରି କରି ପାରୁଛି । କେତେକ ଲୋକ କହୁଛନ୍ତି—ଏସବୁ ଆମର କଣ ଦରକାର ? ଆମେ ଯେମିତି ଥିଲୁ ସେମିତି ନ ରହିବୁ କାହିଁକି ?

ଦୁନିଆଁ ଆଗକୁ ଚାଲିଛି । କେହି କାହାକୁ ଅପେକ୍ଷା କରୁନାହିଁ । ଯେଉଁ ମାଙ୍କଡ଼ମାନେ ଉନ୍ନତି କଲେ ସେମାନେ ମଣିଷ ହେଲେ । ଆଉମାନେ, ଯେଉଁ ମାଙ୍କଡ଼କୁ ସେଇ ମାଙ୍କଡ଼ ହୋଇ ରହିଲେ । ଦୁନିଆଁ ସଙ୍ଗେ ତାଳପକାଇ ନ ଚାଲିଲେ ଆମେ ସେଇପରି ପଛରେ ପଡ଼ି ରହିବୁ । ଆମ ଜାତି ପଛରେ ପଡ଼ି ରହିବ । କୋଟି କୋଟି ବର୍ଷ ପୂର୍ବେ ପୃଥିବୀରେ ବଡ଼ ବଡ଼ ବିଚିତ୍ର ଜନ୍ତୁ ଥିଲେ । ଦୁନିଆଁ ସଙ୍ଗେ ତାଳପକାଇ ଆଗେଇ ନ ପାରିବାରୁ ସେମାନେ ଲୋପ ପାଇଗଲେ । ଆମରି ମଧ୍ୟ ସେଇ ଅବସ୍ଥା ହେବା ବିଚିତ୍ର ନୁହେଁ ।

ତା'ପରେ ଆମେ ପଛରେ ପଡ଼ି ରହିବୁ ବା କାହିଁକି ? ଆମର କଣ ବୁଦ୍ଧି ନାହିଁ ? ଆମର କଣ ବଳ ନାହିଁ ? ଅତୀତରେ ଆମେ ଖୁବ୍ ବଡ଼ ବଡ଼ କାମ କରିଛୁ । କୋଣାର୍କ ପରି ମନ୍ଦିରକୁ ଦେଖି ଲୋକେ ଆଜି ଆଶ୍ଚର୍ଯ୍ୟ ହୋଇ ଯାଉଛନ୍ତି । କିନ୍ତୁ ତା କୋଳି ସେଇ କଥାକୁ ଧରି ଆଜି ଯଦି ଆମେ ପାଲିଙ୍କିରେ ଚଢ଼ି ନିଜକୁ ବଡ଼ ବୋଲି ଭାବୁ ତା ଦ୍ୱାରା କିଛି ଫଳ ହେବ ନାହିଁ । ଆମକୁ ଘୋର ପରିଶ୍ରମ କରିବାକୁ ହେବ । କଳ କାରଖାନା ଗଢ଼ିବାକୁ ହେବ, ଆମ ଦେଶରେ ଥିବା ପାଣି, ପବନ ଓ ଅନ୍ୟାନ୍ୟ ଜିନିଷକୁ କାମରେ ଲଗାଇ ଆମକୁ ଶକ୍ତିଶାଳୀ ହେବାକୁ ହେବ । ଦେଶରୁ ଦରିଦ୍ରତା, ରୋଗ ଓ ମୂର୍ଖତା ଦୂର କରିବାକୁ ହେବ ; ତା ସଙ୍ଗେ ସଙ୍ଗେ ଆମକୁ ଦୁନିଆଁକୁ ବାଟ ଦେଖାଇବାକୁ ହେବ ।

ପୂର୍ବେ ଆମେ ଧର୍ମ କଥାରେ ବେଶି ମନ ଦେଉଥିଲୁ, କାରଣ ସେତେବେଳେ ସମସ୍ତ ସେହିପରି ଥିଲା । ଆଜି ବିଜ୍ଞାନ କଥାରେ ବେଶି ମନ ଦେବାକୁ ହେବ । ଧର୍ମ ଓ ବିଜ୍ଞାନର ମୂଳମନ୍ତ୍ର ପ୍ରାୟ

ଏକା । ପୂର୍ବେ ଆମେ ଗରିବକୁ ସାହାଯ୍ୟ କରି ଧର୍ମ ଅର୍ଜ୍ଜୁଥିଲୁ । ଆଜି ବିଜ୍ଞାନ କହୁଛି ଦେଶରୁ ଦରିଦ୍ରତା ଲୋପ ନ ହେଲେ ଦେଶ ଆଗେଇ ପାରିବ ନାହିଁ । ଆଗେ ରୋଗୀଟିକୁ ସେବାକରି ଆମେ ପୁଣ୍ୟ ଅର୍ଜ୍ଜନ କରୁଥିଲୁ । ଆଜି ଆମ ପଡ଼ୋଶୀ ଘରେ ବସନ୍ତ ହେଲେ ଆମେ ମଧ୍ୟ ସେଥିରୁ ରକ୍ଷା ପାଇବୁ ନାହିଁ । ତେଣୁ ବିଜ୍ଞାନ କହୁଛି—ବସନ୍ତକୁ ମୂଳରୁ ମାରି । ନାନାକାମ କରିବାକୁ ବିଜ୍ଞାନ ଆମ ହାତରେ ବିପୁଳ ଶକ୍ତି ଆଣି ଦେଇଛି । ଆମେ ତାକୁ କାମରେ ଲଗାଇ ନିଜର ଅବସ୍ଥା ସୁଧାରିବୁ ।

କିନ୍ତୁ ଧର୍ମ ଦେହରେ କାଳକ୍ରମେ ଅନେକ ଖରାପ କଥା ପଶି ଯାଇଛି । ଜାତିଭେଦ ଦ୍ୱାରା ମଣିଷ ମଣିଷ ଭିତରେ ଘୃଣା, ଗର୍ବ ଓ ହିଂସା ବଢ଼ି ଯାଇଛି । ବ୍ରାହ୍ମଣ ଅନେକ ପୁରୁଣା ରୀତିନୀତି ନେଇ ଘୋର ଅନଟନରେ କାଳ କାଟୁଛି କିନ୍ତୁ ସେ ସବୁ ଛାଡ଼ି ପାରୁନାହିଁ । ନୂଆ ଦୁନିଆ ସହିତ ନିଜକୁ ମିଶେଇ ନପାରି ବ୍ରାହ୍ମଣ ଆଜି ଦୁଃଖୀ । ଏପରି ଅବସ୍ଥାରେ ରହିଲେ ସେମାନଙ୍କର ଧ୍ୱଂସ ଅବଶ୍ୟମ୍ଭାବୀ ।

କିନ୍ତୁ ଧୀରେ ଧୀରେ ଅବସ୍ଥା ବଦଳୁଛି । ଶିକ୍ଷିତ ଲୋକେ ପୁରୁଣା କଥା ଛାଡ଼ି ନୂଆ ଭାବରେ ଜୀବନକୁ ଗଢ଼ୁଛନ୍ତି । ଦେଶରେ ଶିକ୍ଷାର ପ୍ରସାର ହେଉଛି । ଆମକୁ ଆହୁରି ଶିକ୍ଷିତ ହୋଇ ଶୀଘ୍ର ଶୀଘ୍ର ନାନାପାଠ ଆୟତ୍ତ କରିବାକୁ ପଡ଼ିବ । ଦୁନିଆଁ ର ଗତିକୁ ବୁଝିବାକୁ ପଡ଼ିବ । ବିଜ୍ଞାନୀ ହେବାକୁ ପଡ଼ିବ ।

ଖାଲି ସେତିକି କଲେ ହେବନାହିଁ, ଆମ ଅବସ୍ଥା ଆଜି ବଡ଼ ଶୋଚନୀୟ । ଆମେ ଖୁବ୍ ଦରିଦ୍ର । ଅଥଚ ଆମ ଦେଶରେ ସମ୍ପଦ ପୂରି ରହିଛି । ଘୋର ପରିଶ୍ରମ କରି ସେ ସମ୍ପଦର ଉଚିତ ବିନିଯୋଗ କରିବାକୁ ହେବ । ନୂଆ ଯନ୍ତ୍ରପାତି ବ୍ୟବହାର କରି, ବୈଜ୍ଞାନିକ

ପ୍ରଣାଳୀରେ କୃଷ କରି ବର୍ତ୍ତମାନ ଅପେକ୍ଷା ଅନେକ ଗୁଣ ଅଧିକ ଖାଦ୍ୟ ଆମଦାନୀ କରିବାକୁ ପଡ଼ିବ । ନଈ ବଢ଼ିକୁ ବନ୍ଧ କରି ପାଣି ଯେପରି ଆମର କ୍ଷତି ନ କରି ଉପକାର କରେ, ତାର ବ୍ୟବସ୍ଥା କରିବାକୁ ହେବ । ନିଜ ଦେଶରେ ସମସ୍ତ ଆବଶ୍ୟକତା ପୂରଣ କରି ଆମକୁ ଧନୀ ହେବାକୁ ପଡ଼ିବ ।

ଆମେ ନିଜେ ନିଜ ଦେଶକୁ ଗଢ଼ିବାର ଦାୟିତ୍ୱ ନେଇଛୁ । ଧନ ସମ୍ପଦରେ ଭରା ଆମ ଦେଶ ଯେପରି ଦିନେ ଦୁନିଆରେ ଗଙ୍କରେ ମୁଣ୍ଡଟେକି ଠିଆ ହୋଇ ପାରିବ—ଆମକୁ ଆଜଠାରୁ ଲାଗିପଡ଼ି ତାର ବ୍ୟବସ୍ଥା କରିବାକୁ ପଡ଼ିବ ! ଅଶୀବର୍ଷର ବୁଢ଼ା ଗଛ ପୋତେ ତା ପିଲେ ଫଳ ଖାଇବେ ବୋଲି । ଆମେ ଆମ ପିଲାଙ୍କ ହାତରେ ସୁନାର ଦେଶ ଦେଇଯିବା ।

ଚିରଦିନ ପାଇଁ ଋଷି ଆମକୁ ଡ଼ାକ ଦେଇ ଯାଇଛନ୍ତି "ଉତ୍ତିଷ୍ଠତ ! ଜାଗ୍ରତ ! ପ୍ରାପ୍ୟବରାନ୍ ନିବୋଧତ !" ଉଠ, ଜାଗ, ଯାହା ସହଜରେ ମିଳିବ ସେଥିପାଇଁ ପରିଶ୍ରମ କରିବାରେ ହେଳା କାହିଁକି ?

**ସମାପ୍ତ**

ମୁଦ୍ରାକର—ଶ୍ରୀ ଚିନ୍ତାମଣି ମିଶ୍ର, ନବଜୀବନ ପ୍ରେସ, କଟକ-୨